# ଶ୍ରୀପୁରୁଷୋତ୍ତମ ସ୍ତବ

ମୂଳ ସଂସ୍କୃତ-ପଠାଣି ସାମନ୍ତ

ଖଣ୍ଡପଡ଼ା, ନୟାଗଡ଼, ଓଡ଼ିଶା





ସମ୍ପାଦନା, ଓଡ଼ିଆ ଭାଷାନ୍ତର ଓ ନବାକ୍ଷରୀ ପଦ୍ୟାନୁବାଦ

ସୁରଭାଇ

# ଶ୍ରୀ ପୁରୁଷୋତ୍ତମ ସ୍ତବ



ମୂଳ ସଂସ୍କୃତ:

## ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ର ଶେଖର ହରିଚନ୍ଦନ ମହାପାତ୍ର

ସମ୍ପାଦନା, ଓଡ଼ିଆ ଭାଷାନ୍ତର ଓ ନବାକ୍ଷରୀ

## ସୁରଭାଇ

ଶ୍ରୀପୁରୁଷୋତ୍ତମ ସ୍ତବ
(ଭାଗ-୧ ଓ ଭାଗ-୨)
ମୂଳ ସଂସ୍କୃତ:
ପଠାଣି ସାମନ୍ତ
ଖଣ୍ଡପଡ଼ା, ନୟାଗଡ଼, ଓଡ଼ିଶା
ସମ୍ପାଦନା, ଓଡ଼ିଆ ଭାଷାନ୍ତର ଓ ନବାକ୍ଷରୀ ପଦ୍ୟାନୁବାଦ:
ସୁରଭାଇ
ଗ୍ରା/ପୋ:ହରିହରପୁର, ଭାୟା:ଶରଣକୁଳ,
ଜିଲ୍ଲା:ନୟାଗଡ଼
ଓଡ଼ିଶା, ପିନ୍:୭୫୨୦୮୦
ଦୂରଭାଷ:୯୪୩୭୯୫୮୦୭୭
ପ୍ରକାଶକ :
ଗୁରୁକୁଳ ପ୍ରକାଶନ, ଶରଣକୁଳ
ପ୍ରେରଣା:
ଗୋବିନ୍ଦ ଚନ୍ଦ୍ର ବେହେରା
ସାଧାରଣ ସହ-ସମ୍ପାଦକ ଚାରଣଗୋଷ୍ଠୀ, ପୁରୀ
ମୁଦ୍ରଣ, ପ୍ରଚ୍ଛଦ ଓ ପରିପାଟୀ
ଜଗନ୍ନାଥ ପ୍ରିଣ୍ଟିଙ୍ଗ୍ ପ୍ରେସ୍
ଶରଣକୁଳ, ନୟାଗଡ଼
ମୋ-୯୮୫୩୨୫୨୮୪୩,
ପ୍ରଥମ ପ୍ରକାଶ:
୨୪.୧୨.୨୦୧୮(ନୟାଗଡ଼ ମହୋତ୍ସବ)
ଛପା ସଂଖ୍ୟା:
୧୦୦୦
ମୂଲ୍ୟ:
ଟ.୭୫.୦୦(ପଞ୍ଚସ୍ତରୀ ଟଙ୍କା ମାତ୍ର)


*SHREE PURUSOTTAMA STABA*
*(PART-1 & PART-2)*
MULA SANSKRIT:
PATHANI SAMANTA
KHANDAPADA, NAYAGARH, ODISHA
SAMPADANA, ODIA BHASHANTARA O NABAKSHARI PADYANUBADA
SURABHAI
AT/PO:HARIHAR PUR, VIA:SARANKUL
DIST:NAYAGARH,
ODISHA, 752080
Mob: 9437958077
Publisher:
GURUKULPUBLICATION,SARANKUL
INSPIRATION:
GOBINDA CHANDRA BEHERA
JOINT GENERAL SECRETARY, CHARANGOSTHI, PURI
Printing, Cover Design:
Jagannath Printing Press
Sarankul, Nayagarh
Mob: 9853252843
First1ST EDITION:
24.12.2018(Nayagarh Mahostov)
Copy:
1000
Price:
75/- (Seventy five only)

# ପ୍ରେରଣା_ଦାତାଙ୍କ ପ୍ରେରଣା ପତ୍ର . . .



ଅନନ୍ତ କୋଟି ବିଶ୍ୱବ୍ରହ୍ମାଣ୍ଡର କର୍ତ୍ତା ମହାପ୍ରଭୁ ଶ୍ରୀ ଜଗନ୍ନାଥ ହେଉଛନ୍ତି ବିଶ୍ୱମାନବବାଦର ସର୍ବଶ୍ରେଷ୍ଠ ଦେବତା । ସେ ସ୍ରଷ୍ଟା, ସୃଷ୍ଟି ଓ ସୃଷ୍ଟିର କାରଣ । ସେ ସ୍ୱୟଂ ସୃଷ୍ଟ ଶ୍ରୀପୁରୁଷୋତ୍ତମ । ପୁରୁଷୋତ୍ତମଙ୍କ ସ୍ତବ କରିତାଙ୍କରି ପ୍ରଶସ୍ତି ଗାନ କରିଯାଇଛନ୍ତି ବହୁ ଭକ୍ତ, ସାଧକ, ଗବେଷକ, କବି, ଭାବୁକ ଓ ମହାପୁରୁଷ । ଏମାନଙ୍କ ମଧ୍ୟରେ ଅଛନ୍ତି ବିଶ୍ୱବିଖ୍ୟାତ ଜ୍ୟୋତିର୍ବିଜ୍ଞାନୀ ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖର । ସେ **'ସିଦ୍ଧାନ୍ତ ଦର୍ପଣ'** ଗ୍ରନ୍ଥ ରଚନା କରି କାଳଜୟୀ ହୋଇ ରହିଛନ୍ତି । ଓଡ଼ିଆ ଜାତିକୁ ଭାରତ ତଥା ବିଶ୍ୱ ଦରବାରରେ ପରିଚିତ କରାଇ ପାରିଛନ୍ତି । ତାଙ୍କ ଯୋଗୁଁ ଅବିଭକ୍ତ ପୁରୀ ଜିଲ୍ଲା ତଥା ବର୍ତ୍ତମାନର ନୟାଗଡ଼ ଜିଲ୍ଲା ଅନ୍ତର୍ଗତ ଖଣ୍ଡପଡ଼ା ମାଟି ଗର୍ବିତ । **'ସିଦ୍ଧାନ୍ତ ଦର୍ପଣ'** ଗ୍ରନ୍ଥରେ ୨୪ପ୍ରକାଶ(ଅଧ୍ୟାୟ)ରେ ନୀଳାଚଳନାଥଙ୍କ ସ୍ତୁତି ଅତି ସୁନ୍ଦରଭାବେ ବର୍ଣ୍ଣନା ହୋଇ ଅଜ୍ଞାତ ମାହାତ୍ମ୍ୟ ଲୋକଲୋଚନକୁ ଆସିଛି । ଏହାକୁ ଉତ୍କଳ ଭାଷାରେ ନବାକ୍ଷରୀ ଛନ୍ଦରେ ମୋର ଅନୁଜକଳ୍ପ ଶ୍ରୀମାନ ସୁରେଶ ଚନ୍ଦ୍ର ବରାଡ଼ ରଚନା କରି ପୁସ୍ତକଟିର ନାମ "ପୁରୁଷୋତ୍ତମ ସ୍ତବ" ରଖି ମହାମାନ୍ୟ ଚନ୍ଦ୍ରଶେଖରଙ୍କ ଉଦ୍ଦେଶ୍ୟକୁ ମହିମାନ୍ୱିତ କରି ପାଠକମାନଙ୍କ ହୃଦୟକୁ ସ୍ପର୍ଶକରାଇବାର ଚେଷ୍ଟା କରିପାରିଛନ୍ତି । ତାଙ୍କର ଲକ୍ଷ୍ୟ ଉଦ୍ଦେଶ୍ୟ ଜଗତରେ ଜଗନ୍ନାଥଙ୍କ ସଂପର୍କିତ ପ୍ରାଚୀନ ଗ୍ରନ୍ଥରେ ଲୁଚିଯାଉଥିବା ଅଜ୍ଞାତ ମହାତ୍ମ୍ୟ ଲୋକଲୋଚନକୁ ଆସି ପ୍ରଚାର ପ୍ରସାର ହୋଇ ସୁସ୍ଥ ସମାଜ ପ୍ରତିଷ୍ଠାରେ ସହାୟ ହେଉ । ଏଥିପାଇଁ ତାଙ୍କ ପଛରେ ମୋର ପ୍ରେରଣା ଓ ଜଗନ୍ନାଥଙ୍କ ନିର୍ଦ୍ଦେଶ ଅବ୍ୟାହତ ରହିବ । ପୂର୍ବରୁ ମୋର ରଚିତ **"ପୁରୁଷୋତ୍ତମ ଶ୍ରୀ ଜଗନ୍ନାଥ"** ଶ୍ରୀମାନ ସୁରେଶ ଚନ୍ଦ୍ରଙ୍କର କଠିନ ପରିଶ୍ରମର ଫଳ । ପାଣ୍ଡୁଲିପି ସଂଶୋଧନ, ଡ଼ିଟିପି,ପ୍ରୁଫ ରିଡ଼ିଙ୍ଗ ଓ ମୁଦ୍ରଣ ଶେଷ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ଉତ୍ସାହର ସହ କରି ଜଗନ୍ନାଥ ମହାପ୍ରଭୁଙ୍କ କୃପାପ୍ରାପ୍ତ କରିବାରେ ସେ ସକ୍ଷମ ହୋଇଛନ୍ତି । କଲେଜ ଓ ସ୍କୁଲ ପିଲାଙ୍କ ମଧ୍ୟରେ ଜଗନ୍ନାଥ ଚେତନାର ପ୍ରଚାର ପାଇଁ ଶ୍ରୀଜଗନ୍ନାଥ ସଂସ୍କୃତି ଜ୍ଞାନ ପରୀକ୍ଷା ଓ ତାଲିମ ତାଙ୍କ ଉଦ୍ୟମରେ ହେଉଛି । ଶ୍ରୀ ଜଗନ୍ନାଥଙ୍କ କାର୍ଯ୍ୟରେ ଭବିଷ୍ୟତରେ ଆଗେଇ ଚାଲିବାକୁ ପ୍ରଭୁ ତାଙ୍କୁ ଆଶୀର୍ବାଦ ତଥା ପ୍ରେରଣା ଦିଅନ୍ତୁ; ଏତିକି ନୀଳାଦ୍ରିନାଥଙ୍କ ଚରଣରେ ମୁଁ ପ୍ରାର୍ଥନା କରୁଛି ।

ଜୟ ଜଗନ୍ନାଥ

ସହ ସାଧାରଣ ସମ୍ପାଦକ,ଚାରଣଗୋଷ୍ଠୀ,ପୁରୀ

# କଥା; କଥାରେ:



"ଶ୍ରୀଜଗନ୍ନାଥ ସ୍ୱାମୀ ନୟନପଥଗାମୀ ଭବତୁ ମେ ।"

ସେ ଜଗତର ସ୍ୱାମୀ ବା ନାଥ ଜଗନ୍ନାଥ । ଉତ୍କଳୀୟ ଚେତନା, ସଂସ୍କୃତି, ଐତିହ୍ୟର ମୂଳପିଣ୍ଡ । ପୁଣି ପ୍ରତ୍ୟେକ ଜୀବାତ୍ମାର ପଥପ୍ରଦର୍ଶକ, ଦିଗ୍‌ଦର୍ଶକ । ଅବର୍ଣ୍ଣନୀୟ ସତ୍ତା, ମୁକ୍ତିଦାତା ମୁକୁନ୍ଦ । ଯାହାଙ୍କୁ ଯୋଗୀଗଣ ଯୋଗବାଟ ଜଗି ମଧ୍ୟ ଭେଟ ପାଆନ୍ତି ନାହିଁ । ଯେ ଅକଳ୍ପନୀୟ, ଚିନ୍ତା ଚେତନାର ଊର୍ଦ୍ଧ୍ୱରେ । ସେ ଆଦି ପୁଣି ଅନାଦି, ସାକାର ପୁଣି ନିରାକାର, ସଗୁଣ ପୁଣି ଗୁଣାତୀତ । ଆଦି, ମଧ୍ୟ, ଅନ୍ତଃ ବିବର୍ଜିତ; ପୂର୍ଣ୍ଣ ପୁଣି ଶୂନ୍ୟ ।

କବିର କଳ୍ପନା, ଦାର୍ଶନିକର ଦର୍ଶନ, ଭାବୁକର ଭାବନା, ଭକ୍ତର ଭକ୍ତି, ନିରାଶ୍ରୟର ସ୍ତୁତି ମଧ୍ୟରେ ଯେ ସର୍ବବିଦ୍ୟମାନ, ସେହିଁ ଜଗତବନ୍ଦ୍ୟ ପରମାନନ୍ଦ ପରମେଶ୍ୱର । କବି ଚିନ୍ତେ, ଦେଖେ ପୁଣି ଲେଖେ । ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତ ହରିଚନ୍ଦନ ମହାପାତ୍ର ଅବା ସାମନ୍ତ ଚନ୍ଦ୍ରଶେଖର ଅଥବା ପଠାଣି ସାମନ୍ତ, ଯେଉଁ ନାମରେ ପ୍ରସିଦ୍ଧି ପାଇଥାଆନ୍ତୁ ନା କାହିଁକି, **'ସିଦ୍ଧାନ୍ତ ଦର୍ପଣ'**ର ସ୍ରଷ୍ଟା ରୂପେ ମହାଶୟଙ୍କ ପରିଚିତି ସୁଦୂରପ୍ରସାରୀ । ଚତୁର୍ବିଂଶ ଅଧ୍ୟାୟ ବିଶିଷ୍ଟ,**'ସିଦ୍ଧାନ୍ତ ଦର୍ପଣ'** ଗ୍ରନ୍ଥର ତ୍ରୟୋବିଂଶ ଅଧ୍ୟାୟରେ ସ୍ୱତନ୍ତ୍ର ରୂପେ ଶ୍ରୀ ଜଗନ୍ନାଥ ଚରିତାମୃତ କବି କଳ୍ପିତ । ଏତଦ୍‌ଭିନ୍ନ ଅନ୍ୟ ପ୍ରତ୍ୟେକ ଅଧ୍ୟାୟରେ ଶ୍ରୀ ଜଗନ୍ନାଥ ପ୍ରଶସ୍ତିକୁ ନେଇ ସିଦ୍ଧାନ୍ତ ଦର୍ପଣକାର ଆପଣା ଭକ୍ତିମତ୍ତାର ପରିଚୟ ପ୍ରଦାନ କରିଛନ୍ତି ।

ଚାରଣଗୋଷ୍ଠୀର ଅନ୍ୟତମ ସକ୍ରିୟ ସଦସ୍ୟ ସୁରଭାଇ, 'ସିଦ୍ଧାନ୍ତ ଦର୍ପଣ' ଗ୍ରନ୍ଥରେ ସନ୍ନିବିଷ୍ଟ ନୀଳାଦ୍ରିବିହାରୀଙ୍କ ସ୍ତୁତିର ପଦ୍ୟାନୁବାଦ ନବାକ୍ଷରୀ ବୃତ୍ତରେ ଓଡ଼ିଆ ଭାଷାନ୍ତର କରି ଅନୁଦିତ ପୁସ୍ତିକାକୁ "ପୁରୁଷୋତ୍ତମ ସ୍ତବ" ନାମରେ ନାମିତ କରିଅଛନ୍ତି । ଯାହାର ପ୍ରଥମ ଭାଗ ବିଭିନ୍ନ ଅଧ୍ୟାୟରୁ ୨୮ଟି ପ୍ରଶସ୍ତି ନେଇ **"ନୀଳାଚଳନାଥ ସ୍ତୁତି"** ନାମରେ ନାମିତ ଓ **'ସିଦ୍ଧାନ୍ତ ଦର୍ପଣ'** ଗ୍ରନ୍ଥର ତ୍ରୟୋବିଂଶ ଅଧ୍ୟାୟରେ ରହିଥିବା ଶ୍ରୀ ଜଗନ୍ନାଥ ପ୍ରଶସ୍ତି ଆଲୋଚ୍ୟ ପୁସ୍ତିକାରେ ଦ୍ୱିତୀୟ ଭାଗରେ କରା ଯାଇ ସ୍ୱତନ୍ତ୍ରଭାବେ ଏଥିରେ ସନ୍ନିବେଶିତ କରାଯାଇଛି । ତେବେ ଅନୁବାଦକ ସୁରଭାଇ **'ସିଦ୍ଧାନ୍ତ ଦର୍ପଣ'**ରେ ଉଲ୍ଲେଖ

ଥିବା ବିଭିନ୍ନ ଅଧ୍ୟାୟସ୍ଥ ଶ୍ରୀ ଜଗନ୍ନାଥ ସ୍ତୁତି ଅଂଶବିଶେଷକୁ ଅତ୍ୟନ୍ତ ସତର୍କତାର ସହିତ ଅନୁବାଦ କରି ଅଛନ୍ତି । ସଂସ୍କୃତ ଭାଷାରେ ଗଭୀର ପ୍ରବେଶ ନଥାଇ ଏ କାର୍ଯ୍ୟ ସମାପନ କରିବା ଅତ୍ୟନ୍ତ ଦୁରୂହ ବ୍ୟାପାର । **"ନୀଳାଚଳନାଥ ସ୍ତୁତି"** ପୁସ୍ତିକାରେ **'ସିଦ୍ଧାନ୍ତ ଦର୍ପଣ'** ଗ୍ରନ୍ଥର ଶ୍ରୀଜଗନ୍ନାଥଙ୍କ ଅଷ୍ଟବିଂଶ ଗୋଟି ସ୍ତୁତି ଶ୍ଳୋକର ପଦାନୁବାଦ ଅତ୍ୟନ୍ତ ସତର୍କତାର ସହିତ ମାର୍ମିକ ସ୍ପର୍ଶରେ ରସାଣିତ କରାଯାଇଛି । ପ୍ରତ୍ୟେକ ପଦରେ ପ୍ରଥମେ ମୂଳ ଶ୍ଳୋକ, ତପ୍ରେ ତା'ର ଓଡ଼ିଆ ବ୍ୟାଖ୍ୟା ପୁଣି ରୋଚକ ଢ଼ଙ୍ଗରେ ଅନୁରୂପ ପଦ୍ୟାନୁବାଦ କରାଯାଇ ମୂଳ ଶ୍ଳୋକର ମର୍ଯ୍ୟାଦାକୁ ଅକ୍ଷୁର୍ଣ୍ଣ ରଖାଯାଇଅଛି । ଅନୁବାଦ ଆକ୍ଷରିକ ନ ହୋଇ ଭାବାନୁବାଦ ହେଲେ ତାହା ଜନାଦୃତ ହୋଇଥାଏ । ସୁରବାବୁଙ୍କ ଅନୁବାଦ ଠିକ୍ ସେହିପରି ହୃଦୟଗ୍ରାହୀ । ଶ୍ରୀଜଗନ୍ନାଥ ଲୀଳା ମହିମାକୁ ସର୍ବତ୍ର ପ୍ରଚାର, ପ୍ରସାର କରିବା ଅର୍ଥରେ ଚାରଣଗୋଷ୍ଠୀ ଯେଉଁ ମହତ ପ୍ରୟାସ ଜାରି ରଖିଛନ୍ତି, ସେଥି ନିମନ୍ତେ ସୁରବାବୁଙ୍କ ଉତ୍ସର୍ଗୀକୃତ ପ୍ରଚେଷ୍ଟା ଉଲ୍ଲେଖନୀୟ । ତାହାର ଉଦାହରଣ ତାଙ୍କ ଅନୁଦିତ ପୁସ୍ତିକା **"ନୀଳାଚଳନାଥ ସ୍ତୁତି"** ପ୍ରମାଣ କରେ । ଶ୍ରୀ ଜଗନ୍ନାଥ ଧର୍ମ-ଦର୍ଶନ ପ୍ରଚାର-ପ୍ରସାରରେ ତାଙ୍କ ଐକାନ୍ତିକ ନିଷ୍ଠା ଫଳପ୍ରଦ ହେବା ସହିତ, ତାଙ୍କ ଲେଖନୀ ଅଜସ୍ରସ୍ରାବୀ ହେଉ; ଏତିକି କାମନା ।

**ଡକ୍ଟର ବିଜୟ କୁମାର ଚୌଧୁରୀ**

**ସାହିତ୍ୟସେବୀ, ନୟାଗଡ଼**



# ବନୁ ଭାଇଙ୍କ ଭାବର କଥା:..



ଏଇ ପୁଣ୍ୟମାଟି ଉତ୍କଳର ପ୍ରଥିତଯଶା ସ୍ମରଣୀୟ ସୁପୁତ୍ର ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତ ହରିଚନ୍ଦନ ମହାପାତ୍ର (ପଠାଣି ସାମନ୍ତ) ସଂସ୍କୃତରେ ରଚନା କରିଯାଇଛନ୍ତି କାଳଜୟୀ କୃତି "ସିଦ୍ଧାନ୍ତ ଦର୍ପଣ" ଯାହା ଜ୍ୟୋତିଷ ଶାସ୍ତ୍ରର ଅମୂଲ୍ୟନିଧି । ମହାଜ୍ଞାନୀ ମହାପଣ୍ଡିତ ତଥା ବିଶ୍ୱର ମହାନ ଜ୍ୟୋତିର୍ବିଦ ପଠାଣି ସାମନ୍ତ ଥିଲେ ଜଗତରନାଥ ଜଗନ୍ନାଥଙ୍କର ଜଣେ ଅନନ୍ୟ ଭକ୍ତ । "ସିଦ୍ଧାନ୍ତ ଦର୍ପଣ"ର ପ୍ରତିଟି ପ୍ରକାଶ(ଅଧ୍ୟାୟ)ର ଶେଷ ଶ୍ଳୋକଟି ଜଗନ୍ନାଥଙ୍କ ପ୍ରତି ତାଙ୍କର ସମର୍ପିତ ଭାବର ସୂଚନା ଦିଏ । ପୁନଶ୍ଚ ତ୍ରୟୋବିଂଶ ପ୍ରକାଶଟି ସ୍ୱତନ୍ତ୍ର ଭାବେ ଜଗନ୍ନାଥଙ୍କ ପ୍ରତି ସେ ମହାନ ଭକ୍ତଙ୍କର ଅପୂର୍ବ ଭେଟି ରୂପରେ ସମର୍ପିତ । ଅନୁପ୍ରାସ, ଅଳଙ୍କାର ସହିତ ଶବ୍ଦ ଗାମ୍ଭୀର୍ଯ୍ୟ ସାଧାରଣ ପାଠକର ମଗଜକୁ ଛୁଇଁ ପାରିବା କଷ୍ଟସାଧ୍ୟ ମନେହୁଏ । ଏଭଳି କ୍ଲିଷ୍ଟ ଶ୍ଳୋକ ଗୁଡ଼ିକର ଅର୍ଥ ଓ ଭାବ ଅଗଣିତ ପାଠକ, ପଣ୍ଡିତ ଏବଂ ସାଧାରଣ ଲୋକଙ୍କ ପାଖରେ ପହଞ୍ଚାଇବା ଲକ୍ଷ୍ୟରେ ତଥା ପଠାଣି ସାମନ୍ତଙ୍କର ଜଗନ୍ନାଥଙ୍କ ପ୍ରତି ଥିବା ଭକ୍ତି ଭାବକୁ ଆଜିର ପାଠକ ଓ ସାହିତ୍ୟାନୁରାଗୀଙ୍କ ପାଖରେ ପଞ୍ଚାଇବା ପାଇଁ ସୁନ୍ଦର ପ୍ରୟାସ କରି ସଫଳ ହୋଇଛନ୍ତି ଶ୍ରୀଯୁକ୍ତ ସୁରେଶ ଚନ୍ଦ୍ର ବରାଡ଼(ସୁରଭାଇ) । ନବାକ୍ଷରୀ ବୃତ୍ତରେ ସରଳ ସାବଲୀଳ ଭାଷାରେ ଅନୁବାଦ କରିଛନ୍ତି **"ନୀଳାଚଳ ସ୍ତୁତି"** ଏବଂ **"ପୁରୁଷୋତ୍ତମ ସ୍ତବ"** । ଶ୍ରୀ ବରାଡ଼ଙ୍କର ଏହି ପୁସ୍ତକଟି ଅନୁବାଦ ସାହିତ୍ୟରେ ଓଡ଼ିଶାର ବାଣୀଭଣ୍ଡାରକୁ ଏକ ଅମଳଲ୍ୟ ଉପହାର । ଶ୍ରଯୁକ୍ତ ବରାଡ଼ଙ୍କର ପେଶା ଶିକ୍ଷକତା ବା ଅଧ୍ୟାପନା ହୋଇଥିବା ବେଳେ ପେଶା ତାଙ୍କର ଜଗନ୍ନାଥ ଚେତନାର ପ୍ରଚାର ଓ ପ୍ରସାର କରାଇବା । ଜଣେ ଜଗନ୍ନାଥ ଭକ୍ତର ଜଗନ୍ନାଥଙ୍କ ପ୍ରତି ଥିବା ସମର୍ପଣ ଭାବକୁ ଅନୁବାଦ ସାହିତ୍ୟ ଜରିଆରେ ଜଗନ୍ନାଥପ୍ରେମୀଙ୍କ ନିକଟରେ ପହଞ୍ଚାଇବା କିଛି କମ୍ କଥା ନୁହେଁ । ସୁରଭାଇଙ୍କ ଏହି ଅନୁବାଦ ପୁସ୍ତକଟି ନୟାଗଡ଼ ଜିଲ୍ଲା

ମହୋତ୍ସବର ପ୍ରଥମ ଦିବସ(୨୦୧୯ ମସିହା) ପଠାଣି ସାମନ୍ତ ଜୟନ୍ତୀ ଅବସରରେ ଉନ୍ମୋଚନ ପ୍ରଭୁ ଜଗନ୍ନାଥ କୃପାକରି ମୋ ଦ୍ୱାରା କରାଇ ଥିବାରୁ ମୁଁ ଅତ୍ୟନ୍ତ ଆନନ୍ଦିତ । ସୁରଭାଇଙ୍କ ଲେଖନୀ ଶକ୍ତିଶାଳୀ ଓ ଶାଣିତ ହେଉ । ପ୍ରଭୁ ଜଗନ୍ନାଥ ତାଙ୍କର ବ୍ୟକ୍ତିଗତ, ଗୋଷ୍ଠୀଗତ, ପାରିବାରିକ, ରାଷ୍ଟ୍ରୀୟଏବଂ ସାମାଜିକ ଜୀବନ ସୁଖମୟ କରନ୍ତୁ । ତାଙ୍କର ଚଲାପଥ କୁସୁମିତ ହେଉ । "ଜୟ ଜଗନ୍ନାଥ"

*ପ୍ରମୋଦ ପଟ୍ଟନାୟକ(ବନ୍ଟୁଭାଇ)*
ସମ୍ପାଦକ
ସାମନ୍ତ ଚନ୍ଦ୍ରଶେଖର ସାଂସ୍କୃତିକ ଅନୁଷ୍ଠାନ
ନୟାଗଡ଼



# "ସିଦ୍ଧାନ୍ତ ଦର୍ପଣ"ର ପୁରୁଷୋତ୍ତମ ସ୍ତବ: ଏକ ସାହିତ୍ୟିକ ମୂଲ୍ୟାଙ୍କନ...



ଅସାରେ ଖଳୁ ସଂସାରେ ଚିରଂ ଜୀବତି ମାନବଃ ।
ମହତ୍ କର୍ମଣା କୃତ୍ୟା ଚ ଯଶସାଚ ତ୍ୟାଗେନ ବା ॥

କ୍ଷଣଭଙ୍ଗୁର ସଂସାରରେ ସୃଷ୍ଟ ପ୍ରାଣୀମାନଙ୍କ ମଧ୍ୟରେ ମାନବ ଶ୍ରେଷ୍ଠସ୍ଥାନ ଅଧିକାର କରିଛି । ସେ ଅମୃତମୟ । ଦିବ୍ୟଜ୍ଞାନର ଅଧିକାରୀ । ଯାହାର ଦିବ୍ୟତ୍ୱରେ ସ୍ୱୟଂ ଭଗବାନ ପରମ ପ୍ରୀତ ହୋଇଛନ୍ତି । ଭାଗବତୀୟ ଭାଷାରେ -ମନୁଷ୍ୟ ଦେହେ ଦିବ୍ୟଜ୍ଞାନ । ଦେଖି ସନ୍ତୋଷ ଭଗବାନ ॥

ସେହି ସ୍ୱର୍ଗୀୟ ଜ୍ଞାନର ଅଧିକାରୀ, ଅମୃତମୟ, ଆତ୍ମଜ୍ଞାନ ତତ୍ତ୍ୱବେତ୍ତା, ଜଗତରନାଥ ଜଗନ୍ନାଥଙ୍କର ରମ ଉପାସକ, ପରମ ଭକ୍ତ, ସାମନ୍ତ ଚନ୍ଦ୍ର ଶେଖର । ଯିଏ ପଠାଣି ସାମନ୍ତ ନାମରେ ପରିଚିତ । ଯେ ମହାମହୋପାଧ୍ୟାୟ ଚନ୍ଦ୍ରଅଶେଖର ସିଂହସାମନ୍ତ ହରିଚନ୍ଦନ ମହାପାତ୍ର ନାମାନ୍ତରରେ ପ୍ରସିଦ୍ଧ । ତତ୍କାଳୀନ ଅବିଭକ୍ତ ପୁରୀ ଜିଲ୍ଲାନ୍ତର୍ଗତ ଅଧୁନାତନ ନୟାଗଡ଼ ଜିଲ୍ଲାସ୍ଥ ଖଣ୍ଡପଡ଼ା ଗଡ଼ର ରାଜବଂଶୋଦ୍ଭବ । ପିତୃପାଦଙ୍କ ଠାରୁ ସଂସ୍କୃତ ଶାସ୍ତ୍ର ଅଧ୍ୟୟନ ପୂର୍ବକ ପ୍ରାଥମିକ ଶିକ୍ଷା ସମାପ୍ତ କରିବା ପରେ ବେଦର ଷଡ଼ାଙ୍ଗ ମଧ୍ୟରୁ ନେତ୍ରକଳ୍ପ ଜ୍ୟୋତିଷଶାସ୍ତ୍ରପ୍ରତି ତାଙ୍କର ଆଗ୍ରହ ଉଦ୍ରେକ ହେଲା । ସ୍ୱହସ୍ତ ପ୍ରସ୍ତୁତ କତିପୟ ଯନ୍ତ୍ର(ବାଉଁଶ ନଳ ଏବଂ କତିପୟ କାଠି) ସାହାଯ୍ୟରେ ଗ୍ରହନକ୍ଷତ୍ରାଦିର ସ୍ଥିତି, ଗତି, ପରିକ୍ରମଣାଦିକୁ ପରଖିବା ପାଇଁ ବେଶ ଆଗ୍ରହୀ ହୋଇ ଅତନ୍ଦ୍ର-ଅନିଦ୍ର ରାତ୍ରି ଯାପନ କରିବାରେ ମହଦାନନ୍ଦ ଉପଲବ୍ଧି କରୁଥିଲେ ।ସେ ସବୁ ଉପଲବ୍ଧ ରହସ୍ୟକୁ ତାଳପତ୍ରରେ ଉଲ୍ଲେଖ କରୁଥିଲେ ।

ଭାରତୀୟ ପରମ୍ପରାନୁସାରେ- "କବିତା ବନିତା ଲତା ବିନାଶ୍ରୟେ ନ ବର୍ଦ୍ଧନ୍ତେ" ଏହି ନିୟମାନୁସାରେ ଗ୍ରନ୍ଥାରମ୍ଭରେ ମଙ୍ଗଳାଚରଣ ବିଧାନ ସର୍ବାଦୌ କରଣୀୟ । ସାମନ୍ତ ଚନ୍ଦ୍ରଶେଖରଙ୍କର ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥରେ ଆଶୀର୍ବାଦାତ୍ମକ,ନମସ୍କାରାତ୍ମକ ଓ ବସ୍ତୁନିର୍ଦ୍ଦେଶାତ୍ମକ ଆଦି ତ୍ରିବିଧ ମଙ୍ଗଳା ଚରଣର ତ୍ରିବେଣୀ ସଙ୍ଗମ ଦୃଷ୍ଟି ପଥାରୂଢ଼ ହେଉଛି । ଭାରତ ବର୍ଷସ୍ଥ ଦେଶମାନଙ୍କ ମଧ୍ୟରେ ଉତ୍କଳଭୂଖଣ୍ଡର ମହିମା ଅବର୍ଣ୍ଣନୀୟ । କପିଳ ସଂହିତା ଉଦ୍‌ଘୋଷଣ କରେ-ପୃଥିବ୍ୟାଂ ଭାରତଂ ଶ୍ରେଷ୍ଠଂ ଭାରତେ ଚୋତ୍କଳଃ ଦେଶଃ ସ୍ମୃତଃ ।
ଉତ୍କଳସ୍ୟ ସମେଦେଶଃ କ୍ୱାପିନାସ୍ତି ମହୀତଳେ ॥

"ଉତ୍କୃଷ୍ଟା କଳା ଯସ୍ମିନ୍ ସଃ ଉତ୍କଳଃ" ଏହି ବ୍ୟୁତ୍ପତ୍ତି ଆଧାରରେ ଯଦିଓ 'ଉତ୍କଳ' ନାମକରଣ ଯଥାର୍ଥ ତଥାପି ସମସ୍ତ କଳା ବିଦ୍ୟାର କଳାକାର ଜଗତରନାଥ ଜଗନ୍ନାଥ ଓ କଳାକ୍ଷେତ୍ର ପୁରୁଷୋତ୍ତମ କ୍ଷେତ୍ରର ମହିମା ଦ୍ୱାରା ଉତ୍କଳଭୂମି ବିମଣ୍ଡିତ । ଏ ତତ୍ତ୍ୱର ଅଧିକାରୀ ସାମନ୍ତ ଚନ୍ଦ୍ରଶେଖର ଉତ୍କଳର ଆରାଧ୍ୟ ନୁହେଁ ସମଗ୍ର ବିଶ୍ୱବାସୀଙ୍କର ଆରାଧ୍ୟ, ଜଗତର ସୃଷ୍ଟି-ସ୍ଥିତି-ଲୟର ନିୟନ୍ତା,ସାରା ସଂସାରର କେନ୍ଦ୍ରବିନ୍ଦୁ ଜଗତରନାଥ ନୀଳାଚଳନାଥଙ୍କୁ ଗ୍ରନ୍ଥାରମ୍ଭରେ ଯେଉଁ ସ୍ତୁତି କରିଛନ୍ତି ତାହା ଅତ୍ୟନ୍ତ ହୃଦ୍ୟ ତଥା ସହୃଦ ହୃଦୟାବର୍ଜକ । କେବଳ ସେତିକି ନୁହେଁ, ପୁରୁଷୋତ୍ତମ କ୍ଷେତ୍ରର ପୁଙ୍ଖାନୁପୁଙ୍ଖ ବିବରଣୀକୁ ମଙ୍ଗଳାଚରଣ ମାଧ୍ୟମରେ ଉପସ୍ଥାପନ କରି ନିଜର କବିତ୍ୱ ପରାକାଷ୍ଠାର ପରିଚୟ ବ୍ୟକ୍ତ କରିଛନ୍ତି ।

ଗାଣିତିକ କବି ପଣ୍ଡିତ ସାମନ୍ତ ଚନ୍ଦ୍ର ଶେଖର କେବଳ ଯେ ଜ୍ୟୋତିଷଶାସ୍ତ୍ରର ପ୍ରଣେତା ତାହା ନୁହେଁ କାବ୍ୟ ରଚନାରେ ମଧ୍ୟ ତାଙ୍କର ଅତୁଳନୀୟ ଦକ୍ଷତା ଥିବାର ପ୍ରମାଣ ତାଙ୍କଦ୍ୱାରା ରଚିତ ପୁରୁଷୋତ୍ତମ ସ୍ତବରୁ ଉପଲବ୍ଧ । ସଂସ୍କୃତ ସାହିତ୍ୟ, ବ୍ୟାକରଣ, ଦର୍ଶନ, ବେଦାନ୍ତ, ନ୍ୟାୟ, ଧର୍ମଶାସ୍ତ୍ର, ସାଂଖ୍ୟ, ଯୋଗ, ଛନ୍ଦ ଓ ଅଳଙ୍କାର ଶାସ୍ତ୍ରାଦିକୁ ପଣ୍ଡିତ ପ୍ରବର ସାମନ୍ତ ଚନ୍ଦ୍ର ଶେଖର ଅତିକ୍ରମ କରି ଯାଇଛନ୍ତି । ସମୁଦାୟ ସ୍ତବରେ ଭକ୍ତରସର ଅମୃତମୟୀ ଧାରା ନିରନ୍ତର ପ୍ରବାହିତ । ଶ୍ଳୋକ ସମୁଦାୟ ଛନ୍ଦଶାସ୍ତ୍ରର ନିୟମାନୁସାରେ ଯେଉଳି ଗୁମ୍ଫିତ ସେହିଭଳି ରସାଣିତ । ବିଶେଷତଃ ଶାର୍ଦ୍ଦୁଳ ବିକ୍ରୀଡ଼ିତ, ମନ୍ଦାକ୍ରାନ୍ତା, ମାଳିନ, ସ୍ରଗ୍ଧାରା, ଦ୍ରୁତବିଳମ୍ବିତ,ବସନ୍ତତିଳକ ପ୍ରଭୃତି ଛନ୍ଦର ପ୍ରୟୋଗରେ ଶ୍ଳୋକ ସମୂହ ବେଶ ଗାନ ଯୋଗ୍ୟ ହୋଇ ପାରିଛି । ବେଦର ପାଦ ସ୍ୱରୂପ ଯେଉଁ ଛନ୍ଦ ସେହି ଛନ୍ଦ ଶାସ୍ତ୍ରରେ ସାମନ୍ତ ମହୋଦୟ ଅବଗାହନ କରିଥିବାର ବଳିଷ୍ଠ ପ୍ରମାଣ ଏହାଠାରୁ ଧିକ ବା କ'ଣ ? ଛନ୍ଦ ଶାସ୍ତ୍ର ଅଧ୍ୟୟନ ବ୍ୟତିରେକ ଏସବୁ ଅସମ୍ଭବ ।

"ରୀତୟଃ ଅବୟବସଂସ୍ଥାନ ବିଶେଷ ବତ୍" । ଅଳଙ୍କାର ଶାସ୍ତ୍ର ନିପୁଣ କବି ସାମନ୍ତ ଚନ୍ଦ୍ର ଶେଖରର ସାନୁକୂଳ ପଦମାନଙ୍କର ଯଥାସ୍ଥାନରେ ସନ୍ନିବେଶ କରି ଅପୂର୍ବ କାବ୍ୟ କର୍ତ୍ତୃତ୍ୱର ପରିଚୟ ପ୍ରଦାନ କରିଛନ୍ତି ।

ଅଳଙ୍କାର ଶାସ୍ତ୍ର ପଟୁ ସାମନ୍ତ ଚନ୍ଦ୍ର ଶେଖରଙ୍କ ସ୍ତବ କାବ୍ୟରେ ମାଧୁର୍ଯ୍ୟ ତଥା ପ୍ରସାଦ 'ଗୁଣ'ର ବହୁଳ ପ୍ରୟୋଗ ବିଜ୍ଞତାର ସହିତ କବି ପଣ୍ଡିତ ପ୍ରୟୋଗ କରିଛନ୍ତି କାହିଁକି ନା ଏହା ଭକ୍ତିଭାବରେ ପୂର୍ଣ୍ଣ ।

ଅଳଙ୍କାର ଶାସ୍ତ୍ରରେ କୃତ ପାରଙ୍ଗମ କବି ପଣ୍ଡିତ ସାମନ୍ତ ଚନ୍ଦ୍ର ଶେଖର ସ୍ୱୀୟ **ଶ୍ରୀ ପୁରୁଷୋତ୍ତମ ସ୍ତବ** ସ୍ତୁତି କାବ୍ୟରେ ଉଭୟ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ବହୁଳ ପ୍ରୟୋଗ କରି ନିଜର କବିତ୍ୱ ଚାତୁରୀ ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ବିଶେଷତଃ

ଅନୁପ୍ରାସ ଓ ଯମକାଦି ଶବ୍ଦାଳଙ୍କାରର ପ୍ରାଚୁର୍ଯ୍ୟ ଯେତିକି ଶ୍ରବଣୀୟ, ଉପମା ରୂପକାଦି ଅର୍ଥାଳଙ୍କାରର ବ୍ୟାପକ ପ୍ରୟୋଗ ସେତିକି ସ୍ପୃହଣୀୟ ହୋଇ ପାରିଛି ।

ନବଦୁର୍ଗାନ୍ତର୍ଗତ ଖଣ୍ଡପଡ଼ା ଗଡ଼ ବାସ୍ତବ୍ୟ ସାମନ୍ତ ଚନ୍ଦ୍ର ଶେଖରଙ୍କର ଏହିପରି ଏକ ଅମ୍ଳାନ କୃତିକୁ ସାର୍ବଜନୀନ କରିବାର ଏକଦୁର୍ବାର ପ୍ରୟାସ ମନଭିତରେ ପୋଷଣ କରିଥିବା ବନ୍ଧୁ ଶ୍ରୀଯୁକ୍ତ ସୁରେଶ ଚନ୍ଦ୍ର ବରାଡ଼(ସୁରଭାଇ)ଙ୍କୁ ଅଶେଷ ଧନ୍ୟବାଦ । ଜଗତରନାଥ ଜଗନ୍ନାଥଙ୍କ ଅପାର ଆଶିଷରୁ ଆଜି ସେହି ସ୍ତବ ସୁରଭାଇଙ୍କର ଶୁଦ୍ଧବୁଦ୍ଧି ପ୍ରେରିତ ଲେଖନୀ ମୁନରେ "ନବାକ୍ଷରୀ" ବୃତ୍ତରେ ଆବୃତ୍ତି ହେବାକୁ ଯାଉଛି । ଆଶାକରେ ପ୍ରଭୁ ନୀଳାଚଳନାଥଙ୍କ ଆଶିବୃଷ୍ଟିରେ ସେ ସର୍ବଦା ପ୍ଲାବିତ ଓ ତତ୍ତ୍ୱଜ୍ଞାନ ସର୍ଜନାରେ ସଦାବ୍ରତୀ ହୁଅନ୍ତୁ ।

ଶ୍ରୀ ଭାବଗ୍ରାହୀ କର

ପ୍ରାଧ୍ୟାପକ ଭାବଗ୍ରାହୀ କର

ଅଧ୍ୟକ୍ଷ ଦଧ୍ୟାଦନ ଜୀଉ ସଂସ୍କୃତ ମହାବିଦ୍ୟାଳୟ

କୁରାଳ, ନୟାଗଡ଼, ଓଡ଼ିଶା



# ନିଜକଥା



'ସର୍ବ ଧର୍ମାନ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ', ପ୍ରଭୁଙ୍କର ଏହି ମୁଖ ନିସୃତ ବାଣୀ ମନରେ ହଲଚଲ ସୃଷ୍ଟି କରି ତାଙ୍କରି ଆଡ଼କୁ ଏ ଅମାନିଆ ମନକୁ ଟାଣି ନେଇ ଯିବାରେ ସମର୍ଥ ହୋଇଥିଲା । ଚାଲୁଚାଲୁ ଗୋବିନ୍ଦ ସାର୍ ଆସିଥିଲେ ଦୃଷ୍ଟିପଥକୁ । ଜଗନ୍ନାଥଙ୍କ ପ୍ରତି ସହଜାତ ଭାବେ ଥିବା ଆକର୍ଷଣ ଓ ତାଙ୍କର କାର୍ଯ୍ୟ ଓ ଜୀବନଶୈଳୀ ମୋତେ ଜଗନ୍ନାଥଙ୍କ ପ୍ରତି ଆହୁରି କରିଥିଲା ନିକଟତର । ଜଗନ୍ନାଥଙ୍କ **"ମୁକ୍ତି ଚିନ୍ତାମଣି"** ସଂସ୍କୃତ କାବ୍ୟର ମୁଦ୍ରଣ ଦାୟିତ୍ୱ ମୋତେ ଅର୍ପିତ ହେବା ପରେ ମନରେ ଆସିଥିଲା ପୁରାତନ ସଂସ୍କୃତ କାବ୍ୟ ଯାହା ପ୍ରଭୁ ଜଗନ୍ନାଥଙ୍କ ଉପରେ ଲିଖିତ ତାର ନବାକ୍ଷରୀ ବୃତ୍ତରେ ଅନୁବାଦ ପୂର୍ବକ ପୁନଃ ସଂସ୍କରଣ ତଥା ପୁନରୁଦ୍ଧାର କରିବା । ଗୋବିନ୍ଦ ସାର୍‌ଙ୍କ ସ୍ୱୀକୃତି ପରେ ନୟାଗଡ଼ ମାଟିର ବରପୁତ୍ର ଆମର ଗର୍ବ ଓ ଗୌରବ, ଯାହା ଯୋଗୁ ଆମ୍ଭେ ସାରା ବିଶ୍ୱରେ ଏକ ବିଜ୍ଞାନ ମନସ୍କ ଜାତି ଭାବରେ ପରିଚିତ ସେହି ମହାମାନବଙ୍କ ଗ୍ରନ୍ଥ **"ସିଦ୍ଧାନ୍ତ ଦର୍ପଣ"** କଥା ମନକୁ ଆସିଲା । ମହାକାଶ ବିଜ୍ଞାନୀ ସାମନ୍ତ, "ବିଜ୍ଞାନୀମାନେ ନାସ୍ତିକ" ଏ କଥାକୁ ଭୁଲ ସାବ୍ୟସ୍ତ କରିଥିବା ତାଙ୍କର ସିଦ୍ଧାନ୍ତ ଗ୍ରନ୍ଥ ପଢ଼ିବା ବେଳେ ସାମ୍ୟକ ଅନୁଭବ କରିଥିଲି । ପ୍ରଥମେ ତାଙ୍କରି ଗ୍ରନ୍ଥରୁ କାର୍ଯ୍ୟ ଆରମ୍ଭ କରିବାର ଇଚ୍ଛା ପୋଷଣ କରି ଯେତିକି ଯେତିକି ଉକ୍ତ ଗ୍ରନ୍ଥରେ ପ୍ରବେଶ କଲି ସାମନ୍ତ ଜଣେ ମହାନ ବୈଜ୍ଞାନିକ ସାଙ୍ଗକୁ ଜଣେ ହଜି ଯାଇଥିବା ବିଖ୍ୟାତ ଭକ୍ତ ଏ କଥା ଅନୁଭବ କଲି । ତାଙ୍କର ଉକ୍ତ ଭକ୍ତରୂପକୁ ଲୋକଲୋଚନକୁ ଆଣିବା ମୋର ଧ୍ୟେୟ ପାଲଟି ଗଲା । 'କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦା ଚ ନ' ଦର୍ଶନକୁ ପାଥେୟ କରି ଜୀବନ ରାସ୍ତାରେ ଚାଲିବାର ଆଶା ଓ ଆକାଂକ୍ଷା ଭିତରେ ପ୍ରଭୁ ଜଗନ୍ନାଥଙ୍କର ଦୟାରୁ ମୋପରି ଜଣେ ଅନାମଧେୟ ସାହିତ୍ୟ ଅନଭିଜ୍ଞ ଅଧାତ୍ମିକ ପାଠ୍ୟକ୍ରମର ଶିଶୁ ଶ୍ରେଣୀର ଛାତ୍ର ଆପଣ ମାନଙ୍କ ଆଗରେ ଭେଟି ଦେଉଛି **'ପୁରୁଷୋତ୍ତମ ସ୍ତବ'** । ଏଥିରେ ରହିଛି ଦୁଇଟି ବିଭାଗ । ପ୍ରଥମ ଭାଗକୁ **"ନୀଳାଚଳନାଥ ସ୍ତୁତି"** ଓ ଦ୍ୱିତୀୟ ଭାଗକୁ **"ପୁରୁଷୋତ୍ତମ ସ୍ତବ"** ଭାବରେ ନାମିତ କରି ଉଭୟକୁ **"ପୁରୁଷୋତ୍ତମ ସ୍ତବ"** ଭାବରେ ଗୋଟିଏ ପୁସ୍ତକରେ ସନ୍ନିବେଶିତ କରାଯାଇଛି । **"ନୀଳାଚଳ ନାଥ"** ସ୍ତୁତିରେ ଦିଆଯାଇଥିବା

୨୮ଟି ଶ୍ଳୋକକୁ ସିଦ୍ଧାନ୍ତ ଦର୍ପଣର ବିଭିନ୍ନ ପ୍ରକାଶ(ଅଧ୍ୟାୟ)ରୁ ସଂଗ୍ରହ କରାଯାଇଛି । **"ପୁରୁଷୋତ୍ତମ ସ୍ତବ"** ସାମନ୍ତଙ୍କଦ୍ୱାରା ନାମିତ ତଥା ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥର ୨୩ତମ ଅଧ୍ୟାୟ, ଯେଉଁଥିରେ ୫୭ଟି ଶ୍ଳୋକ ରହିଛି ।

ବିଜୟ ସାର୍ ପୁସ୍ତକଟିକୁ ଆମୂଳଚୂଳ ପଢ଼ିବାର କଷ୍ଟ କରିଥିବାରୁ ଓ ମୋର ବନ୍ଧୁ ଭାବଗ୍ରାହୀ ତାଙ୍କର ସଂସ୍କୃତ ସାହିତ୍ୟିକ ଦୃଷ୍ଟିଭଙ୍ଗୀ ସ୍ଥାନିତ କରିଥିବାରୁ ପ୍ରଭୁ ଚରଣାରବିନ୍ଦରେ ସେମାନଙ୍କର ଉତ୍ତରୋତ୍ତର ଉନ୍ନତି ପାଇଁ କୃପା ଭିକ୍ଷା କରୁଛି । ଅନୁଜ କଞ୍ଚ ଶିକ୍ଷକ ଗୋଦାବରୀ ବସନ୍ତିଆ ଓ ଶିକ୍ଷକ ନିରାକାର ସ୍ୱାଇଁ ଆରମ୍ଭରୁ ଶେଷ ଯାଏଁ ମୋର ଉତ୍ସାହ ବୃଦ୍ଧି କରିବା ସହ ପୁସ୍ତକଟିର ସଂଶୋଧନରେ ଯେଉଁ ରୁଚି ପ୍ରଦର୍ଶନ କରିଛନ୍ତି ତାହା କେବଳ ତାଙ୍କର ଜଗନ୍ନାଥଙ୍କ ପ୍ରତି ଥିବା ଭକ୍ତି ଓ ମୋ ପ୍ରତି ଥିବା ସେମାନଙ୍କର ନିଛକ ଭଲପାଇବା ଯୋଗୁ ସମ୍ଭବ ହୋଇଛି ।

ପ୍ରିୟ ପ୍ରମୋଦ ପଟ୍ଟନାୟକ(ବନ୍ଟୁଭାଇ) ଶୁଣିବା ମାତ୍ରେ ପୁସ୍ତକଟିକୁ ଯେତିକି ଭଲପାଇବା ଓ ସ୍ନେହର ସହିତ ୨୦୧୮ ନୟାଗଡ଼ ମହୋତ୍ସବରେ ଉନ୍ମୋଚିତ କରିବାର ଆଗ୍ରହ ପ୍ରଦର୍ଶନ କରିଛନ୍ତି ତାହା ତାଙ୍କର ପ୍ରଭୁ ଜଗନ୍ନାଥଙ୍କ ପ୍ରତି ଥିବା ଅହେତୁକ ଆକର୍ଷଣ ଓ ଭକ୍ତିର ଯେ ନିଦର୍ଶନ ଏହା କହିବା ନିଷ୍ପ୍ରୟୋଜନ ।

"ପୁରୁଷୋତ୍ତମ ସ୍ତବ" ପ୍ରସ୍ତୁତିରେ ମୋର କିଛି ଭୂମିକା ଥିବାର ଅନୁଭବ ମୋର ନାହିଁ । ପ୍ରଭୁ ପୁରୁଷୋତ୍ତମ ଜଗନ୍ନାଥ ଏ ସ୍ତବକୁ ଶୁଣି ଖୁସି ହେଲେ ମୁଁ ଖୁସି ହେବି ।



ଜୟ ଜଗନ୍ନାଥ

## ପ୍ରାକ୍ କଥନ

ଶୁଣ ସୁଜନେ ଦେଇ ଚିତ୍ତ । ଜଗନ୍ନାଥଙ୍କର ଚରିତ ॥୦/୧॥
ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥରେ । ବର୍ଣ୍ଣିତ ତେଇଶ ଅଧ୍ୟାରେ ॥୦/୨॥
ପ୍ରତି ପ୍ରକାଶୁ ଏକ ଏକ । ସଂଗ୍ରହ କରାଯାଇ ଶ୍ଳୋକ ॥୦/୩॥
ଏ ନୀଳାଚଳନାଥ ସ୍ତୁତି । ଭାଗ ପ୍ରଥମର ପ୍ରସ୍ତୁତି ॥୦/୪॥
ଅନ୍ୟ ଏକ ପ୍ରକାଶ ଅଛି । ଯହିଁ ପ୍ରଭୁ କଥା ପୂରିଛି ॥୦/୫॥
ନାମ ସ୍ତବ ପୁରୁଷୋତ୍ତମ । ପ୍ରକାଶ ଯେ ତେଇଶତମ ॥୦/୬॥
ସେ କଥା ଦ୍ୱିତୀୟ ଭାଗରେ । ପ୍ରକାଶିତ ତାର କୃପାରେ ॥୦/୭॥
ସାମନ୍ତ ଆପଣେ ଯେପରି । ଲେଖନୀବଦ୍ଧ ଛନ୍ତି କରି ॥୦/୮॥
ତାହାରେ ନବାକ୍ଷରୀ ବୃତ୍ତେ । ବର୍ଣ୍ଣିବି ବୋଲି ଭାବି ଚିତ୍ତେ ॥୦/୯॥
ହୃଦ ମଧ୍ୟରେ ଆଶା କରି । ବସିଛି କାଳିଆ ସୁମରି ॥୦/୧୦॥
ପଠାଣି ସାମନ୍ତ ନାମରେ । ପ୍ରସିଦ୍ଧ ଯିଏ ଏ ସଂସାରେ ॥୦/୧୧॥
ପ୍ରସାଦୁ ଶ୍ରୀ ଚନ୍ଦ୍ର ଶେଖର । ଜନମ ହୋଇଛି ତାଙ୍କର ॥୦/୧୨॥
ପୂର୍ଣ୍ଣ ନାମ ଚନ୍ଦ୍ରଶେଖର । ସିଂହ ସାମନ୍ତ ରଜାଘର ॥୦/୧୩॥
ପଠାଣି ଏକମାତ୍ର ପୁତ୍ର । ହରିଚନ୍ଦନ ମହାପାତ୍ର ॥୦/୧୪॥
ଅଖଣ୍ଡ ପ୍ରତିଭା ଯାହାର । ପ୍ରସାଦୁ କାଳିଆ ଠାକୁର ॥୦/୧୫॥
ଲେଖିଣ ସିଦ୍ଧାନ୍ତ ଦର୍ପଣ । ନୟାଗଡ଼ର ଟାଣପଣ ॥୦/୧୬॥
ବିଶ୍ୱରେ ଧ୍ୱଜା ଉଡ଼ାଇଲେ । ଓଡ଼ିଆ ନାମକୁ ରଖିଲେ ॥୦/୧୭॥
ଜନମି ଖଣ୍ଡପଡ଼ା ଗଡ଼େ । ଧନ୍ୟ କରିଲେ ନୟାଗଡ଼େ ॥୦/୧୮॥
ଲୋକ ମୁଖରେ ପ୍ରଚଳିତ । ବାଣୀ ନୟାଗଡ଼ ପଣ୍ଡିତ ॥୦/୧୯॥
କରିଲେ ତାହାକୁ ସାର୍ଥକ । ରଖିଲେ ନୟାଗଡ଼ ଟେକ ॥୦/୨୦॥
ସେହି ସାମନ୍ତ ଗୁଣମଣି । ଅପର୍ତ୍ତି ନାମ ଯା ପଠାଣି ॥୦/୨୧॥
ତାଙ୍କରି ପାଦେ ମଥା ଥୋଇ । ନମୁଛି ନୀଳାଚଳ ସାଇଁ ॥୦/୨୨॥
ନୋହିଲେ ଯାହାର କରୁଣା । ବ୍ରହ୍ମା ଶଙ୍କର ହୁନ୍ତି ବଣା ॥୦/୨୩॥

ତାଙ୍କରି କରୁଣା ହୋଇଲେ । ବର୍ଣ୍ଣିବି କଥା ତାଙ୍କ ତୁଲେ ॥୦/ ୨୪॥
ସେ ପ୍ରଭୁ ମୋର ହୃଦେ ବସି । କହି ଦିଅନ୍ତୁ ପଦ ଆସି ॥୦/ ୨୫॥
ମୋ ପ୍ରଭୁ ଭକତ ହୃଦୟ । ହୁଅନ୍ତୁ ଅଧମେ ସଦୟ ॥୦/ ୨୬॥
ଜଗନ୍ନାଥ ନୀଳାଦ୍ରି ହାତୀ । ପାଦରେ ଜଣାଏ ପ୍ରଣତି ॥୦/ ୨୭॥

ବିଦ୍ର: **ପ୍ରଥମ ଭାଗ"ନୀଳାଚଳନାଥ ସ୍ତୁତି"**ରେ ମୋଟ ୨୮ଟି ଶ୍ଲୋକ ସନ୍ନିବେଶିତ ହୋଇଛି ।କେଉଁ ପ୍ରକାଶରୁ କେଉଁ ଶ୍ଲୋକ ନିଆ ଯାଇଛି ତାହାର ବର୍ଣ୍ଣନା ନିମ୍ନ ପ୍ରକାରର-

୧ମ ପ୍ରକାଶ-୧, ୨, ୩ ଓ ୫୫

୨ୟ ପ୍ରକାଶ-୨୫, ୩ୟ ପ୍ରକାଶ- ୭, ୪ର୍ଥ ପ୍ରକାଶ-୫୭,
୫ମ ପ୍ରକାଶ-୨୧୧ ୬ଷ୍ଠ ପ୍ରକାଶ-୧୬୧, ୭ମ ପ୍ରକାଶ-୯୫,
୮ମ ପ୍ରକାଶ-୮୭, ୯ମ ପ୍ରକାଶ-୭୮, ୧୦ମ ପ୍ରକାଶ-୩୭,
୧୧ଶ ପ୍ରକାଶ-୧୧୧, ୧୨ଶ ପ୍ରକାଶ-୯୩, ୧୩ଶ ପ୍ରକାଶ-୮୫,
୧୫ଶ ପ୍ରକାଶ-୭୮, ୧୬ଶ ପ୍ରକାଶ-୮୦, ୧୭ଶ ପ୍ରକାଶ-୧୬୦
୧୮ଶ ପ୍ରକାଶ-୧୭୬, ୧୯ଶ ପ୍ରକାଶ-୧୨୪ ୨୦ଶ ପ୍ରକାଶ-୧୧୨,
୨୧ଶ ପ୍ରକାଶ-୨୫୧ ୨୨ଶ ପ୍ରକାଶ-୭୭,
୨୪ଶ ପ୍ରକାଶ-୧୫୩, ୧୫୪ ଓ ୧୫୯ ତମ ଶ୍ଲୋକ

**ଦ୍ୱିତୀୟଭାଗ** "ପୁରୁଷୋତ୍ତମ ସ୍ତବ"ରେ ୨୩ଶ ପ୍ରକାଶର ସମସ୍ତ ୫୭ଟି ଶ୍ଲୋକ ସନ୍ନିବେଶିତ ହୋଇଛି ।



# ପ୍ରଥମ ଭାଗ

# ନୀଳାଚଳନାଥ ସ୍ତୁତି

## ରତ୍ନ ସିଂହାସନ ଓ ସପ୍ତାବରଣ ପ୍ରଭୁ:

ଶ୍ରୀଭୂମାଧବଚକ୍ରଚକ୍ର୍ୟବନିଭୃଭଦ୍ରାଭିରଭ୍ୟୁଜ୍ଜ୍ୱଳଂ
ଶ୍ରୀକଣ୍ଠପ୍ରମୁଖାଖିଳାମରଶିଖାଜୁଷ୍ଟାଂଘ୍ରିପୀଠୋପଳମ୍ ।
ଶ୍ରୀନୀଳାଚଳମୌଳିମଣ୍ଡନମହାନୀଳାୟମାନଂ ମହଃ
ଶ୍ରୀଭୂମାଧରିତସ୍ମରଂ ଭବତୁ ନଃ ପ୍ରତ୍ୟୁହହତ୍ୟୁଦ୍ୟତମ୍ ।୧ ।

ଶ୍ରୀଦେବୀ, ଭୂଦେବୀ, ମାଧବ, ସୁଦର୍ଶନ, ମାତା ସୁଭଦ୍ରା ତଥା ବଡ଼ଭାଇ ବଳଭଦ୍ରଙ୍କ ସାନିଧ୍ୟରେ ଉଜ୍ଜ୍ୱଳତର ଯାହାର ସୁନ୍ଦରତା କନ୍ଦର୍ପକୁ ପରାଜିତ କରୁଛି, ଯାହାର ଶାଳଗ୍ରାମରେ ପରିପୂର୍ଣ୍ଣ ଶିଳା ନିର୍ମିତ ରତ୍ନସିଂହାସନକୁ ସମସ୍ତ ଦେବତା ମାନଙ୍କ ଗହଣରେ ଆସି ଶିରସ୍ପର୍ଶ ପୂର୍ବକ ଦେବଦେବ ମହାଦେବ ପ୍ରଣାମ କରୁଛନ୍ତି, ନୀଳାଚଳ ପର୍ବତର ଶିରୋଭୂଷଣ ତଥା ଆମର ସମସ୍ତ ବିଘ୍ନ ବିନାଶ ନିମନ୍ତେ ସଦା ଜାଗ୍ରତ ସେହି ଘନନୀଳ ତ୍ରିପଣ୍ଡ କଳା ନୀଳାଚଳ ନାଥ ଜଗନ୍ନାଥଙ୍କୁ ମୁଁ ସ୍ମରଣ କରୁଛି ।୧।

| | | | |
|---|---|---|---|
| ଶ୍ରୀଦେବୀ ଭୁଦେବୀ ମାଧବ | । | ମାତା ସୁଭଦ୍ରା ବଳଦେବ | ॥୧/୧॥ |
| ସୁଦରଶନଙ୍କ ସାନିଧେ | । | ଯେ ତେଜ କନ୍ଦର୍ପକୁ ନିନ୍ଦେ | ॥୧/୨॥ |
| ସଙ୍ଗତେ ଧରି ଦେବଗଣ | । | ମାତା ପାର୍ବତୀ ଜୀବଧନ | ॥୧/୩॥ |
| ଶିଳା ଶୋଭିତ ଯେ ଆସନ | । | ନାମ ତା ରତ୍ନ ସିଂହାସନ | ॥୧/୪॥ |
| ମଥାକୁ ରଖି ତାହା ପରେ | । | ନମନ୍ତି ଯାରେ ବାରେବାରେ | ॥୧/୫॥ |
| ନୀଳ ପାହାଡ଼ ଶିରଶୋଭା | । | ବିଘ୍ନ ବିନାଶେ ଯିଏ ଉଭା | ॥୧/୬॥ |
| ତ୍ରିପଣ୍ଡ କଳା ସେ ମୋ ନାଥ | । | ନୀଳ ଅଚଳ ଜଗନ୍ନାଥ | ॥୧/୭॥ |
| ତା ରୂପ ହୃଦୟ କନ୍ଦରେ | । | ଦିବସ ରାତ୍ରି ମୁହିଁ ସ୍ମରେ | ॥୧/୮॥ |

# ଭକ୍ତି ପ୍ରେମାମୃତ:

ଗାଙ୍ଗେୟଦ୍ୟୁତିଭଙ୍ଗଦାଙ୍ଗଲତୟା ଶ୍ରୀରାଧୟାଲିଙ୍ଗିତଂ
ବିଦ୍ୟୁତ୍ସଙ୍ଗିଘନାଘନାପଘନରୁକ୍ ପ୍ରେମାମୃତୈକାଶୟମ୍ ।
ସଚ୍ଚିତ୍ସୁଖମକ୍ଷରକ୍ଷରପରଂ ପୂର୍ଣ୍ଣାତିପୂର୍ଣ୍ଣୋତ୍ତମଂ
ଶ୍ରୀକୃଷ୍ଣାଖ୍ୟମୁପାସ୍ମହେ ସୁରୁଚିରଂ ବେଦାନ୍ତବେଦ୍ୟଂ ମହଃ ।୨।

ସୁବର୍ଣ୍ଣ ତେଜକୁ ନିନ୍ଦାକରୁଥିବା ଭକ୍ତିରୂପୀ ଶ୍ରୀରାଧାଙ୍କର ଅଙ୍ଗଲତା ନୀଳତେଜ ଯୁକ୍ତ ଶ୍ରୀକୃଷ୍ଣଙ୍କ ଶରୀରରେ ଜଡ଼ି ରହିବା ପରି ତଥା କଳାହାଣ୍ଡିଆ ବର୍ଷଣ ମୁଖର ମେଘ ଆଶ୍ରିତ ବିଜୁଳି ପରି ଯାହାଙ୍କ ଶରୀରକୁ ଭକ୍ତି ପ୍ରେମାମୃତ ଆଶ୍ରୟ କରି ରହିଛି, ଯେ ପୂର୍ଣ୍ଣ ଅପୂର୍ଣ୍ଣ ଓ କ୍ଷର ଅକ୍ଷରରୁ ଊର୍ଦ୍ଧ୍ୱରେ, ଯିଏ ସତ୍‌ଚିଦ୍‌ଆନନ୍ଦ ସ୍ୱରୂପୀ ଓ ଯାହାଙ୍କୁ କେବଳ ବେଦାନ୍ତ ଶାସ୍ତ୍ର ଦ୍ୱାରା ଉପଲବ୍ଧି କରି ହୁଏ, ସେହି ଘନ କାଳିଆ ଚିକ୍କଣକଳା, ସମସ୍ତ ଜଗତର ଆକର୍ଷଣକାରୀ ନୀଳାଦ୍ରିନାଥଙ୍କୁ ମୁଁ ଉପାସନା କରୁଛି ।୨।

ଶୁଦ୍ଧ ସୁବର୍ଣ୍ଣ ବଳି ତେଜେ । ଯାହାର ସ୍ୱରୂପ ବିରାଜେ ॥୨/୧॥
ଭକତି ରୂପୀ ସେହି ରାଧା । ଲତିକା ପରି ଜଡ଼ି ସଦା ॥୨/୨॥
ରହିଛି ଯେହ୍ନେ ନନ୍ଦ ସୁତେ । ନୀଳ ଜୀମୂତ ତେଜଯୁକ୍ତେ ॥୨/୩॥
ଘନ ଘନରେ ଆଶ୍ରାକରି । ଯେସନେ ଚମକେ ବିଜୁଳି ॥୨/୪॥
ତେସନେ ଭକ୍ତ ପ୍ରେମାମୃତ । ଯାହାର ଶରୀରେ ଆଶ୍ରିତ ॥୨/୫॥
ପୂର୍ଣ୍ଣ ଅପୂର୍ଣ୍ଣ କ୍ଷରାକ୍ଷର । ଊର୍ଦ୍ଧ୍ୱରେ ନିବାସ ଯାହାର ॥୨/୬॥
ନୁହଁଇ ଯିଏ ଜୀବଗତ । ପଞ୍ଚଭୂତରୁ ଯେ ଅତୀତ ॥୨/୭॥
ସଚ୍ଚିଦାନନ୍ଦ ସେ ସ୍ୱରୂପୀ । ସଚରାଚର ଅଛି ବ୍ୟାପୀ ॥୨/୮॥
ବେଦାନ୍ତେ ଲଭ୍ୟ କୃପାସିନ୍ଧୁ । ଆକର୍ଷଣର କେନ୍ଦ୍ରବିନ୍ଦୁ ॥୨/୯॥
ସେ ପ୍ରଭୁ କାଳିଆ ସାଆନ୍ତ । ପୂଜେ ମୁଁ ଯା'ପାଦ ନିରତ ॥୨/୧୦॥

# ଅବତାର ଓ ବିରାଟ ରୂପ:

ଜୟତି ଜଗତୀ ଭର୍ତ୍ତୁର୍ଧାମାଦ୍ଭୁତଂପରମାଣୁତାଂ
ଯଯୁରପି ଜଗଦ୍କୋଷା ଯଲ୍ଲୋମଜାଳ ବିଳାବିଳୌ ।
ଯଦନିଳଜଳଜ୍ୟୋତିଃ-କ୍ଷୌଣୀପରାଣୁଗୃହୋଦର-
ସ୍ଫୁରଦପି ସୁରାଗଣୈର୍ୟଃ କ୍ରୀଡ଼ନ୍ନିଜୈରବତାରକୈଃ ।୩।

ଯେଉଁ ପ୍ରଭୁଙ୍କର ଶରୀର ଆଶ୍ଚର୍ଯ୍ୟଜନକ ଓ ଅତ୍ୟନ୍ତ ତେଜଯୁକ୍ତ, ଯାହାର ଶରୀର ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ପରିବ୍ୟାପ୍ତ ଓ ତାଙ୍କର ପ୍ରତ୍ୟେକ ଲୋମ କୂପରେ ମାଳମାଳ ହୋଇ ବ୍ରହ୍ମାଣ୍ଡ ବିରାଜୁଛି, ଯେଉଁମାନେ ସମସ୍ତେ ତାଙ୍କ ଶରୀରରୁ ସୃଷ୍ଟିହୋଇ ତାହାରି ମଧ୍ୟରେ ପୁଣି ବିଲୀନ ହୁଅନ୍ତି, ଯିଏ ସ୍ୱୟଂ ବିରାଟ ହେଲେ ମଧ୍ୟ ଲୀଳା କରିବାପାଇଁ ପଞ୍ଚଭୂତରେ ସମାହିତ ହୋଇ ପରମାଣୁ ରୂପଧାରଣ କରି ଅବତାର ଗ୍ରହଣ କରନ୍ତି, ଯିଏ ଗ୍ରହଣ କରୁଥିବା ଅବତାର ତଥ୍ୟ ଓ ତତ୍ତ୍ୱ ଦେବତା ମାନଙ୍କୁ ମଧ୍ୟ ଅଗୋଚର, ସେହି ପ୍ରଭୁ ନୀଳାଦ୍ରି ସିଂହଙ୍କୁ ମୁଁ ଚିନ୍ତନ କରୁଛି ।୩।

ବ୍ରହ୍ମାଣ୍ଡ ମାଳମାଳ ହୋଇ । ଯା ଲୋମ କୂପରେ ଶୋଭଇ ।।୩/୧।।
ସେ ଲୀଳା କରିବାର ଆଶେ । ପଞ୍ଚ ତତ୍ତ୍ୱ ରୂପ ପ୍ରକାଶେ ।।୩/୨।।
ଧରଇ ନର କଳେବର । ଯେଣୁ ମନୁଷ୍ୟ ପ୍ରିୟ ତାର ।।୩/୩।।
ଅସଂଖ୍ୟ ଅବତାର ଧରି । ଓହ୍ଲାଏ ଏ ମରତ ପୁରି ।।୩/୪।।
ଲୀଳା ଖେଳା ଯେତେ କରଇ । ଦେବେ ତା ଗୋଚର ନୁହଁଇ ।।୩/୫।।
ଯାହାର ବିରାଟ ସ୍ୱରୂପ । ସେ ଧରେ ପରମାଣୁ ରୂପ ।।୩/୬।।
ଅରୂପ ନିଏ କ୍ଷୁଦ୍ରରୂପ । ଜୀବ ଉଦ୍ଧାରେ ବିଶ୍ୱରୂପ ।।୩/୭।।
ମୂଢ଼େ ତା ତତ୍ତ୍ୱ କାହୁଁ ବୁଝି । ଭକତ ପାରେ ତାକୁ ବାନ୍ଧି ।।୩/୮।।
ଯୁଗକୁ ଯୁଗ ଏହି ମତେ । ଜଗତ ନାଥ ଏ ଜଗତେ ।।୩/୯।।
କ୍ଷୁଦ୍ର ରୂପକୁ ଧରିଥାଇଁ । ଯାହାକୁ ଅବତାର କହି ।।୩/୧୦।।
ସଂସାରେ ଶ୍ରେଷ୍ଠ ଯାର କାନ୍ତି । ଅବତାରଙ୍କୁ ସେ ଜନ୍ମାନ୍ତି ।।୩/୧୧।।
ତା ଦେହୁ ସର୍ବେ ହୋଇ ସୃଷ୍ଟି । ପ୍ରଳୟେ ତା ଦେହେ ମିଶନ୍ତି ।।୩/୧୨।।
ସେ ପ୍ରଭୁ ନୀଳାଚଳ ନାଥ । ଅନାଥ ଜନଙ୍କର ନାଥ ।।୩/୧୨।।
ବିରାଟ କ୍ଷୁଦ୍ର ରୂପ ଯା'ର । ଚିନ୍ତେ ମୁଁ ତାହାର ପୟର ।।୩/୧୩।।

# ନୀଳମାଧବ ଓ ଦାରୁବ୍ରହ୍ମ ପ୍ରଭୁ:

ଯଃ ପୂର୍ବତ୍ର ପରାର୍ଦ୍ଧକେ ସ୍ମ ବସତି ଶ୍ରୀମାଧବାଖ୍ୟଂ ଦଧଦ୍-
ଗୁପ୍ତଃ କ୍ଲୃପ୍ତମହେନ୍ଦ୍ରନୀଳତନୁରୁଙ୍‌ନୀଳାଚଳାଗ୍ରସ୍ଥଳେ ।
ଦ୍ୱୈତୀୟୀକପରାର୍ଦ୍ଧକେଽଧମଜନାନୁଦ୍ଧର୍ତ୍ତୁକାମଃ ସ୍ଫୁଟଂ
ଧତ୍ତେ ଦାରବଧାମ ମାମବତୁ ମାକାନ୍ତଃ ସ ସନ୍ତାପତଃ ।୪।

ପ୍ରଥମ ପରାର୍ଦ୍ଧରେ ମହାଇନ୍ଦ୍ରନୀଳମଣୀ ଶରୀର ଧାରଣ କରି ନୀଳଗିରିର ଶିଖର ଭାଗରେ ଶ୍ରୀନୀଳମାଧବ ନାମ ଗ୍ରହଣ କରି ଯେ ଗୁପ୍ତଭାବରେ ବାସ କରୁଥିଲେ ଏବଂ ପରେ ଦ୍ୱିତୀୟ ପରାର୍ଦ୍ଧରେ ପତିତ ଅଧମ ମାନଙ୍କର ଉଦ୍ଧାର ନିମନ୍ତେ ଦାରୁବ୍ରହ୍ମ ରୂପ ଧାରଣ କରି ସେହିଠାରେ ପରିସ୍ଫୁଟ ହୋଇ ରହିଅଛନ୍ତି ସେହି ଲକ୍ଷ୍ମୀକାନ୍ତ ଶ୍ରୀ ଜଗନ୍ନାଥ ମୋତେ ସମସ୍ତ ଦୁଃଖରୁ ପରିତ୍ରାଣ କରନ୍ତୁ ।୪।

ଯେ ପ୍ରଭୁ ପ୍ରଥମ ପରାର୍ଦ୍ଧେ । ନୀଳ ପର୍ବତ ଭାଗ ଊର୍ଦ୍ଧ୍ୱେ ॥୪/୧॥
ନୀଳମାଧବ ନାମେ ଖ୍ୟାତ । ଥିଲେ ଧରି ରୂପ ଗୁପତ ॥୪/୨॥
ତନୁ ତା ଇନ୍ଦ୍ର ନୀଳମଣି । ତେଜ ଛଟକେ ଯାର ପୁଣି ॥୪/୩॥
ବେନି ଚରଣ ହସ୍ତ ଚାରି । ପାଦରୁ ବହେ ଗଙ୍ଗା ବାରି ॥୪/୪॥
ହାତେ ଶୋଭଇ ଯା ଆୟୁଧ । ଶଙ୍ଖ ଚକର ଗଦା ପଦ୍ମ ॥୪/୫॥
ପୂଜଇ ଯାରେ ବନବାସୀ । ହାତେ ଖୁଆଏ ହୋଇ ଖୁସି ॥୪/୬॥
ଦେଇଣ ବଣଫଳ ମୂଳ । ବାଧକେ ଖୋଏ ଦଶମୂଳ ॥୪/୭॥
ସେ ପ୍ରଭୁ ତାରେ ଦୟା କଲା । ସେବା ସୁଯୋଗ ତାରେ ଦେଲା ॥୪/୮॥
ପ୍ରଥମ ପରାର୍ଦ୍ଧର ଅନ୍ତେ । ଦ୍ୱିତୀୟ ପରାର୍ଦ୍ଧ ଆଗତେ ॥୪/୯॥
ପତିତ ଅଧମ ଉଦ୍ଧାର । ନିମନ୍ତେ ଦାରୁର ଶରୀର ॥୪/୧୦॥
ଧରିଣ ପ୍ରଭୁ ନରହରି । ରହିଲେ ସେହି ନୀଳଗିରି ॥୪/୧୧॥
ସେ ମହାବାହୁ ଲକ୍ଷ୍ମୀକାନ୍ତ । ଦୁଃଖ ନାଶନେ ବଳବନ୍ତ ॥୪/୧୨॥
ସମସ୍ତ ଦୁଃଖୁ ପରିତ୍ରାଣ । କରନ୍ତୁ ପ୍ରଭୁ ନାରାୟଣ ॥୪/୧୨॥
ନାଶନ୍ତୁ ମୋର ସର୍ବ ଦୁଃଖ । ଜଗତ ପତି ପଦ୍ମମୁଖ ॥୪/୧୩॥

# ସୁଦର୍ଶନଧାରି ପ୍ରଭୁଃ

ଭ୍ରାମ୍ୟଦ୍‌ଭାତି ଯଦୀୟଭାସ୍ୱର-ବପୁର୍ବିଭ୍ର-ଭଚକ୍ର ପ୍ରଭାଂ
ଭିନ୍ଦଭୀମତମଃ ସୁଦର୍ଶନମିତି ଖ୍ୟାତଂ କ୍ଷୟାନ୍ତଂ କ୍ଷିତୌ ।
ଭକ୍ତାନାଂ ଭବଭୀତି-ସମ୍ଭବ ଭିଦେ ଭୂଭାର ଭୂତଚ୍ଛିଦେ
ଧାମ୍ନେ ଶ୍ୟାମଧରାଧରାଧିପତୟେ କସ୍ମୈଚିଦସ୍ମୈ ନମଃ ।୫।

ଆକାଶସ୍ଥ ଭଚକ୍ରର ତେଜ ଧାରଣକରି ବିଶ୍ୱବ୍ରହ୍ମାଣ୍ଡର ଅନ୍ଧକାର ଦୂରିଭୁତ କରିବାରେ ସମର୍ଥ ତଥା ପ୍ରଳୟ ପର୍ଯ୍ୟନ୍ତ କାର୍ଯ୍ୟଶୀଳ ସୁଦର୍ଶନ ଚକ୍ର ଯେଉଁ ନୀଳାଚଳବାସୀ ପ୍ରଭୁ ହସ୍ତରେ ଧାରଣ କରି ଭକ୍ତମାନଙ୍କର ଭବଭୟ ଦୁର କରୁଛନ୍ତି ଏବଂ ଧରାଭାର ବୃଦ୍ଧିକରୁଥିବା ପ୍ରଣୀମାନଙ୍କର ସଂହାର କରନ୍ତି ସେହି ପ୍ରଭୁ ଜଗନ୍ନାଥଙ୍କୁ ମୁଁ ଭକ୍ତି ଭାବରେ ପ୍ରଣାମ କରୁଛି ।୫।

ଭଚକ୍ର ଚକ୍ର ସୁଦର୍ଶନ । ଅଟଇ ଅତି ତେଜିଆନ ।।୫/ ୧।।
ତା ତେଜେ ବିଶ୍ୱ ଅନ୍ଧକାର । ତତ୍‌କ୍ଷଣେ ହୋଇଯାଏ ଦୂର ।।୫/ ୨।।
ତା କୋପେ ଯମ ଭୟ ପାଏ । ଶ୍ରୀକ୍ଷେତ୍ରେ ଡରରେ ନ ଯାଏ ।।୫/ ୩।।
ଏହି ସେ ସୁଦର୍ଶନ ଚକ୍ର । ଯେ ଚକ୍ର ନାଶିଥିଲା ନକ୍ର ।।୫/ ୪।।
ଭୂଭାର ବଢ଼ାଏ ଯେ ପ୍ରାଣୀ । ତାକୁ ସେ ପକାଅଇ ହାଣି ।।୫/ ୫।।
ଅଟେ ସେ ଚକ୍ର ବଳିଆର । ନାଶେ ଯେ ପାପ ପାପୀଙ୍କର ।।୫/ ୬।।
ପ୍ରଳୟ ଯାଏଁ ଯାର ସ୍ଥିତି । ଶୋଭଇ ଯେଉଁ ପ୍ରଭୁ କତି ।।୫/ ୭।।
ସେ ପ୍ରଭୁ ବସି ନୀଳାଚଳେ । ଚକ୍ରକୁ ଧରିଣ ହସ୍ତରେ ।।୫/ ୮।।
ନାଶନ୍ତି ଭକ୍ତ ଭବ ଭୟ । ଦିଅନ୍ତି ଭକତେ ଅଭୟ ।।୫/ ୯।।
ମୋ ପ୍ରଭୁ ସେ ଚକ୍ରର ନାଥ । ଜଗତ ନାଥ ଜଗନ୍ନାଥ ।।୫/ ୧୦।।
ଅଭୟ ପଦରେ ତାହାର । ନମଇଁ ମୁହିଁ ବାରବାର ।।୫/ ୧୧।।

# ନୀଳାଚଳ:

ପ୍ରାଚ୍ୟାଂ କାଞ୍ଚନଭୂଧରା ସୁରପୁରୀ ସଂପୃକ୍ତ ସୂତ୍ରାଚ୍ଚତୁ-
ର୍ଦନ୍ତିକ୍ଷ୍ମାମିତ ଯୋଜନାନ୍ତମିଳିତେ ବ୍ୟାକ୍ଷୋତ୍ତର-ସ୍ୟାମପି ।
ଅବ୍ଧେ ରୋଧସି ସିନ୍ଧୁ ସିନ୍ଧୁର ଭୁଜୈ ର୍ଯୋ ଯୋଜନୈ ରାଜତେ
ନିତ୍ୟଂ ଶିତ୍ୟବନୀ ଧରେନ୍ଦ୍ରଶିଖରେ ତସ୍ମୈ ପରସ୍ମୈ ନମଃ ।୬।

ସୁବର୍ଣ୍ଣ ମିଳୁଥିବା ଉତ୍ତର ମେରୁକୁ ଲଙ୍କା ଦେଇ ଅସୁରମାନେ ବାସ କରୁଥିବା ଦକ୍ଷିଣ ମେରୁକୁ ସଂଯୁକ୍ତ କରୁଥିବା ଭାରତୀୟ ମାଧ୍ୟନ୍ଦିନ ରେଖାର ୧୮୪ ଯୋଜନ ପୂର୍ବରେ ତଥା ବିଷୁବ ରେଖାର ୨୮୪ ଯୋଜନ ଉତ୍ତରରେ ସମୁଦ୍ରକୂଳସ୍ଥ ନୀଳାଚଳ ପାହାଡ଼ ଉପରେ ଥିବା ପବିତ୍ର ପୁରୀର ବଡ଼ ଦେଉଳରେ ଯେଉଁ ପ୍ରଭୁ ନିତ୍ୟ ବିରାଜମାନ ଅଛନ୍ତି ସେହି ପ୍ରଭୁ ଜଗନ୍ନାଥଙ୍କୁ ମୁଁ ଭକ୍ତି ଭାବରେ ପ୍ରଣାମ କରୁଛି ।୬।

| | | |
|---|---|---|
| ଉତ୍ତର ମେରୁକୁ ଦକ୍ଷିଣ । | ଯୋଡ଼ିଛି ରେଖା ମଧ୍ୟନ୍ଦିନ | ।।୬/୧।। |
| ଯେ ରେଖା ଲଙ୍କାର ଉପରେ । | ଯେଉଁଠି ବସନ୍ତି ଅସୁରେ | ।।୬/୨।। |
| ଯାଇଛି ସେ ରେଖାର ନାମ । | ଭାରତୀୟ ରେଖା ମଧ୍ୟମ | ।।୬/୩।। |
| ଏକଶ ଚୌରାଶୀ ଯୋଜନ । | ପୂର୍ବ ଭାରତ ମଧ୍ୟନ୍ଦିନ | ।।୬/୪।। |
| ବିଷୁବ ରେଖା ଠାରୁ ଦୂରେ । | ଦୁଇଶ ଚୌରାଶୀ ଉତ୍ତରେ | ।।୬/୫।। |
| ଉତ୍କଳେ ମହୋଦଧି ତୀରେ । | ପବିତ୍ର ଶ୍ରୀକ୍ଷେତ୍ର ପୁରୀରେ | ।।୬/୬।। |
| ରହିଛି ପାହାଡ଼ ଶିଖରେ । | ନୀଳାଚଳ ଗିରି ଉପରେ | ।।୬/୭।। |
| ଶିରୀ ମନ୍ଦିର ତାର ନାମ । | ପୃଥୀରେ ଅର୍ଜିଛି ସୁନାମ | ।।୬/୮।। |
| ବିରାଜେ ପ୍ରଭୁ ଜଗନ୍ନାଥ । | ତା ପାଦେ ଥାଉ ମୋର ମାଥ | ।।୬/୯।। |
| ପତିତ ଉଦ୍ଧାରେ ଯା ଖ୍ୟାତି । | ତା ପାଦେ ଜଣାଏ ପ୍ରଣତି | ।।୬/୧୦।। |

# ନୀଳାଚଳେଶଃ

ଯତ୍ରୋଃଶକ୍ତିଚିରନ୍ତନାଃ ସଭକଳାଂବେଦାଙ୍ଗୁଳାମକ୍ଷଭା
ପ୍ରାଗ୍‌ଦେଶାନ୍ତରସାଧିତାନି ବିପଳାନ୍ୟବ୍‌ଧି ତ୍ରିବେଦଦ୍ୱିପାନ୍ ।
ତାଂ ତାନ୍ୟଷ୍ଟ-କଲୋନିତାଂ 'ଶିଗୁଣ-କ୍ଷ୍ମାଂକା-ନ୍ନବାସ୍ତଦ୍‌ଗିରୌ
ରାଜନ୍ ରାଜତୁ ରାଜରାଜ-ସୁହୃଦା ଗେୟୋ ଗିରିଶଃ ସମେ ।୭।

ପ୍ରାଚୀନମାନଙ୍କ ମତରେ ଯେଉଁ ନୀଳାଚଳର ଅକ୍ଷପ୍ରଭା ୪/୨୭ ଆଙ୍ଗୁଳ ଓ ଦେଶାନ୍ତର ୮୪୩୪ ବିଳିତା ଏବଂ ନବ୍ୟମାନଙ୍କ ମତରେ ଯଥାକ୍ରମେ ଆ ୪/୧୯ ଓ ବି ୯୧୩୮, ସେଇଠି କୁବେରଙ୍କ ମିତ୍ର ଶିବଙ୍କ ଦ୍ୱାରା ପୂଜିତ ହୋଇ ଯେଉଁ ଜଗତର ନାଥ ଜଗନ୍ନାଥ ବିରାଜମାନ ହୋଇଛନ୍ତି ସେହି ନୀଳାଚଳେଶ ମୋ ହୃଦୟରେ ମଧ୍ୟ ବିରାଜମାନ କରନ୍ତୁ ।୭।

| | | | |
|---|---|---|---|
| ନୀଳାଚଳର ଅକ୍ଷପ୍ରଭା | । | ଯହିଁ ନୀଳାଦ୍ରି ନାଥ ଉଭା | ।।୭/ ୧।। |
| ବେଦର ସଂଖ୍ୟାରେ ଆଙ୍ଗୁଳ | । | ନବୀନ ପ୍ରାଚୀନର ମେଳ | ।।୭/ ୨।। |
| ବିଂଶକଳା ସପ୍ତ ଅଧିକ | । | ମତ ପ୍ରାଚୀନ ପଣ୍ଡିତଙ୍କ | ।।୭/୩।। |
| ଉଣଶି କଳା ପରିମାଣ | । | କୁହନ୍ତି ପଣ୍ଡିତ ନବୀନ | ।।୭/ ୪।। |
| ଚାରିଶ ଚଉତ୍ରିଶାଧିକ | । | ସହସ୍ର ବସୁଙ୍କ ସଂଖ୍ୟକ | ।।୭/ ୫।। |
| ବିଳିତା ରୂପେ ଦେଶାନ୍ତର | । | ସଂଖ୍ୟାରେ ଯା ନୀଳାଚଳର | ।।୭/ ୬।। |
| ପ୍ରାଚୀନ ପଣ୍ଡିତଙ୍କ ବାଣୀ | । | ନବୀନେ ଅନ୍ୟ ରୂପେ ଭଣି | ।।୭/ ୭।। |
| ଅଠତ୍ରିଶାଧିକ ଏକଶ | । | ବିଳିତା ନବ ଯେ ସହସ୍ର | ।।୭/୮।। |
| ଅକ୍ଷପ୍ରଭା ଓ ଦେଶାନ୍ତର | । | ନାମ ତାହାର ନୀଳାଚଳ | ।।୭/ ୯।। |
| କୁବେର ଦେବଙ୍କ ବାନ୍ଧବ | । | ନାଗଭୂଷଣ ସଦାଶିବ | ।।୭/ ୧୦।। |
| ପୂଜନ୍ତି ସେ କ୍ଷେତ୍ରର ପତି | । | ଜଗତ ନାଥ ଶିରୀପତି | ।।୭/ ୧୧।। |
| ରୁଦ୍ର ସେବିତ ଦିଅଁ ସେହି | । | ଚୌବର୍ଗ ଭକତେ ଦିଅଇ | ।।୭/ ୧୨।। |
| ସେ ପ୍ରଭୁ ନୀଳାଚଳ ଈଶ | । | କରନ୍ତୁ ମୋ ହୃଦେ ନିବାସ | ।।୭/ ୧୩।। |

# ନୀଳାଚଳରେ ନୀତି ଓ ଉତ୍ସବ:

ନିତ୍ୟନୈମିତ୍ତିକାଦ୍ୟୁତ୍ସବାର୍ଥୋତ୍ସୁକଃ
ପଞ୍ଜିକାଂ ବ୍ୟଞ୍ଜୟନ୍ନର୍ଯ୍ୟମାଦ୍ୟୁର୍ଜିତାମ୍ ।
ଅଞ୍ଜନାଭାଚଳେ ଭ୍ରାଜତେ ଯଃ ସଦା
କଞ୍ଜନାଭଂ ଭଜେ ତଂ ଭବୋଭଞ୍ଜନମ୍ ।୮।

ଅଞ୍ଜନର ଆଭା ପରି କାନ୍ତିଯୁକ୍ତ ନୀଳାଚଳରେ ବିରାଜିତ ଦାରୁବ୍ରହ୍ମଙ୍କର(ସକାଳ ମଙ୍ଗଳ ଆଳତୀ ଠାରୁ ରାତ୍ରୀର ବଡ଼ସିଙ୍ଗାର ପହୁଡ଼ ପର୍ଯ୍ୟନ୍ତ ବଢୁଥିବା) ନିତ୍ୟ ଏବଂ ବର୍ଷସାରା ଅନୁଷ୍ଠିତ ନୈମିତ୍ତିକ ନୀତି ତଥା ପର୍ବପର୍ବାଣୀ ଠିକ୍ ଭାବେ ଠିକ୍ ତିଥି ଓ ନକ୍ଷତ୍ରରେ ଅନୁଷ୍ଠିତ ହେବା ସଂପର୍କେ ଉତ୍କଣ୍ଠିତ ହୋଇ ସେ ବିଷୟରେ ସାହାଯ୍ୟ କରିବା ଲକ୍ଷ୍ୟରେ ମୁଁ ସୂର୍ଯ୍ୟାଦି ଗ୍ରହ ସଂବଳିତ ପଞ୍ଜିକା ନିର୍ମାଣ କରି ସେହି ସଂସାରର ମୁକ୍ତିଦାତା ପଦ୍ମନାଭ ଜଗନ୍ନାଥଙ୍କୁ ତାହା ସାହାଯ୍ୟରେ ତାଙ୍କର ଲୀଳା ପ୍ରଦର୍ଶନ ଦ୍ୱାରା ଭକ୍ତମାନଙ୍କ ମନମୋହନ ପୂର୍ବକ ସେମାନଙ୍କୁ ମୁକ୍ତି ପ୍ରଦାନ କରିବା ନିମନ୍ତେ ଭଜନ କରୁଛି ।୮।

ଜଗତ ହେଲେ ପୁଷ୍କରିଣୀ । ଭାରତ ଦେଶ କମଳିନୀ ।।୮/୧।।
ସେ କମଳିନୀର କେଶର । ଅଟଇ ପୁଣ୍ୟ ନୀଳାଚଳ ।।୮/୨।।
ସେ କେଶରର ଯେ ବାସନା । ତାହା ଜଗନ୍ନାଥ ଚେତନା ।।୮/୩।।
ଅଞ୍ଜନ ଯେହ୍ନେ ତାର ଆଭା । ତାହାର କି ଉପମା ଦେବା ।।୮/୪।।
କେଶର ମଧ୍ୟେ ଦାରୁବ୍ରହ୍ମ । କରି ଅଛନ୍ତି ଅବସ୍ଥାନ ।।୮/୫।।
ତାଙ୍କର ନିତ୍ୟ ନୈମିତ୍ତିକ । କରମ ମଙ୍ଗଳ ଦାୟକ ।।୮/୬।।
ଦିବସେ ରାତ୍ରେ ଅନୁଷ୍ଠିତ । ସେଥି ନିମନ୍ତେ ଉତ୍କଣ୍ଠିତ ।।୮/୭।।
ତିଥି ନକ୍ଷତ୍ର ଋତୁ ମାସ । ଅୟନ ବର୍ଷ ବା ବିଶେଷ ।।୮/୮।।
ପର୍ବପର୍ବାଣୀ ନୀତି ରୀତି । ପାଳିତ ହୁଏ ତାଙ୍କ କତି ।।୮/୯।।
ନିର୍ଭୁଲେ ସେବକ ସେବିବେ । ନୀତିକୁ ଯେମନ୍ତେ ପାଳିବେ ।।୮/୧୦।।
ସୂର୍ଯ୍ୟାଦି ଗ୍ରହ ସଂବଳିତ । ପଞ୍ଜିକା କରିଛି ନିର୍ମିତ ।।୮/୧୧।।
ତାହାରି ଯୋଗେ କରି ଲୀଳା । ଭକତବନ୍ଧୁ ଭାବଭୋଳା ।।୮/୧୨।।
ହରନ୍ତୁ ଭକତ କଷଣ । ଭକତ ବନ୍ଧୁ ନାରାୟଣ ।।୮/୧୩।।
ମୋ ପ୍ରଭୁ ସର୍ବ ମୁକ୍ତି ଦାତା । ପଦ୍ମନାଭ ବିଶ୍ୱ କରତା ।। ।୮/୧୪।।
ଜଗତ ନାଥ ଜଗନ୍ନାଥ । ଭଜେ ମୁଁ ତାଙ୍କ ପଦ୍ମପାଦ ।।୮/୧୫।।

# କର୍ମଫଳଦାତା ନୀଳାଚଳେଶଃ

ପ୍ରାଗ୍ ଜନ୍ମାର୍ଜିତ ଚିତ୍ରକର୍ମବିସରଂ ସଂସାରିଣାଂ ପ୍ରାଣିନାଂ
ଯଃ ସଂଜ୍ଞାପୟିତୁଂ ସରୋଜଜନୁଷା ସଂସୃଜ୍ୟ ଖେଟବ୍ରଜମ୍ ।
ଦ୍ରାଙ୍ମନ୍ଦପ୍ରବହାପମାଦିବିବିଧଭ୍ରାନ୍ତୌ ନିଯୋଜ୍ୟ ସ୍ୱୟଂ
ତନ୍ମୁକ୍ତ୍ୟୈ ପୁରୁଷୋତ୍ତମାଖ୍ୟମସୃଜଦ୍ଧାମୈତମୀଶଂ ଭଜେ ।୯।

ପୂର୍ବ ଜନ୍ମରେ ଆମେ ଯେଉଁ କର୍ମ କରିଛୁ ଏହି ଜନ୍ମରେ ତାହାର ଫଳ କଣ ହେବ ତାହା ଜନ୍ମ ମାତ୍ରେ ଜଣାଇ ଦେବା ନିମନ୍ତେ ଯେଉଁ ଭଗବାନ ବ୍ରହ୍ମାଙ୍କୁ ସର୍ଜନା କରି ଗ୍ରହ ସୃଷ୍ଟି କରିବାକୁ ଆଦେଶ ଦେଇ ଅଛନ୍ତି ଏବଂ ଯେଉଁ ବ୍ରହ୍ମା ପୁଣି ଉଚ୍ଚ, ଶୀଘ୍ର, ମନ୍ଦ, ପ୍ରବହ, ପାତ ଆଦି ସୃଷ୍ଟି କରି ଗ୍ରହ ଗତିକୁ ନିୟନ୍ତ୍ରିତ କରୁ ଅଛନ୍ତି, ପତିତ ପ୍ରାଣୀଗଣଙ୍କ ମୁକ୍ତି ନିମନ୍ତେ ଏହି ପରମ ଧାମ ପୁରୁଷୋତ୍ତମ କ୍ଷେତ୍ରକୁ ସୃଷ୍ଟି କରି ଥିବା ସେହି ମୋର ପ୍ରଭୁ ଭଗବାନ ନୀଳାଦ୍ରିବିହାରୀଙ୍କୁ ମୁଁ ସବୁବେଳେ ପ୍ରାର୍ଥନା କରୁଛି ।୯।

| | | | |
|---|---|---|---|
| ପୂର୍ବଜନ୍ମରେ ଯେତେ କର୍ମ | । | କରିଛି ଏ ଜୀବ ଅଧମ | ॥୯/ ୧॥ |
| ଇହ ଜନ୍ମରେ ଫଳ ତାର | । | ଭୁଞ୍ଜିବ କେଉଁ ପରକାର | ॥୯/ ୨॥ |
| ତାହାକୁ ଜଣାଇବା ପାଇଁ | । | ଯେ ପ୍ରଭୁ ବ୍ରହ୍ମାଙ୍କୁ ସର୍ଜାଇ | ॥୯/୩॥ |
| ନକ୍ଷତ୍ର ଗ୍ରହ ସୃଷ୍ଟି କଲେ | । | ତାଙ୍କରି ସହଯୋଗେ ଭଲେ | ॥୯/ ୪॥ |
| ଗ୍ରହର ଉଚ୍ଚ ପାତ ପୁଣି | । | ପ୍ରବହ ଶୀଘ୍ର ମନ୍ଦ ଜାଣି | ॥୯/ ୫॥ |
| ଗ୍ରହ ଗତିକୁ ନିୟନ୍ତ୍ରଣ | । | କରନ୍ତି ଯେଉଁ ନାରାୟଣ | ॥୯/ ୬॥ |
| ଦେଖିଣ କର୍ମାକର୍ମ ଭଲେ | । | ଦିଅନ୍ତି ଫଳ କର୍ମ ତୁଲେ | ॥୯/ ୭॥ |
| ସେ ପ୍ରଭୁ ନୀଳାଦ୍ରିବିହାରୀ | । | ଭାଇ ଭଉଣୀ ସଙ୍ଗେଧରି | ॥୯/ ୮॥ |
| ପତିତ ପ୍ରାଣୀଙ୍କର ମୁକ୍ତି | । | ନିମନ୍ତେ କ୍ଷେତ୍ର ଉତପତି | ॥୯/ ୯॥ |
| କରି ଅଛନ୍ତି ତହିଁ ବିଜେ | । | ପୁରୁଷୋତ୍ତମ କ୍ଷେତ୍ରେ ନିଜେ | ॥୯/ ୧୦॥ |
| ସେ ମୋର କାଳିଆ ସାଆନ୍ତ | । | ପାପ ନାଶନେ ବଳବନ୍ତ | ॥୯/ ୧୧॥ |
| ତାହାଙ୍କ କଞ୍ଜ ପାଦ ତଳେ | । | ନିତି ମୁଁ ଭକ୍ତି ଅର୍ଘ୍ୟ ଢାଳେ | ॥୯/ ୧୨॥ |
| ସେ ପ୍ରଭୁ ପରମ କାରଣ | । | କରନ୍ତୁ ମୋରେ ଉଦ୍ଧାରଣ | ॥୯/ ୧୩॥ |

# ନୀଳାଚଳ ସ୍ଥିତିः

ଯତ୍ରାଷ୍ଟାବ୍‌ଧିକଳାଢ୍ୟନନ୍ଦକୁଲବୈ ରକ୍ଷଃ ସମକ୍ଷୀକୃତଃ
ବ୍ୟକ୍ଷାତ୍ ସାର୍ଦ୍ଧରସର୍କ୍ଷକୈଃ ଖଖଭୁଜୈର୍ଭୁମଧ୍ୟରେଖାଂକତଃ ।
ସିଦ୍ଧଂ ଯୋଜନକୈଃ ସ୍ୱଦେଶବିବରଂ ତତ୍ରାସିତାଦ୍ରୌ ଶଲ-
ଲ୍ଲୀଳେଳାକମଳାବିଳାସ୍ୟଳମଳଂକୁଯର୍ୟାନ୍ମଦୀୟଂମନଃ ।୧୦।

ଯାହାର ଉତ୍ତର ଅକ୍ଷାଂଶ ୧୯୦/୪୮, ବିଷୁବ ରେଖାଠାରୁ ଯାହାର ଦକ୍ଷିଣୋତ୍ତର ଅନ୍ତର ୨୬୬.୫ ଯୋଜନ ଏବଂ ଭାରତୀୟ ମଧ୍ୟନ୍ଦିନ ରେଖା ଠାରୁ ଯାହାର ପୂର୍ବ ଦେଶାନ୍ତର ୨୦୦ ଯୋଜନ, ସେହି ନୀଳାଚଳରେ ଭାବାବେଶରେ ଚଞ୍ଚଳ ଭୁଦେବୀ ଓ ମହାଲକ୍ଷ୍ମୀଙ୍କ ସହିତ କ୍ରୀଡ଼ା କରୁଥିବା ଶ୍ରୀ ଜଗନ୍ନାଥ ମୋର ମନ ଉପରେ ସବୁବେଳେ ବସି ମୋର ମନୋରଥ ପରିପୂର୍ଣ୍ଣ କରନ୍ତୁ । ।୧୦।

ଦ୍ୱିଶତୁ ଉଣାକଳା ଦଶ । ବିକଳା ଯେ ଅଠଚାଳିଶ ॥୧୦/୧॥
ଉତ୍ତର ଅକ୍ଷାଂଶରେ ରହି । ନୀଳାଚଳ ନାମକୁ ବହି ॥୧୦/୨॥
ବିଷୁବ ରେଖା ଠାରୁ ଦୂର । ଦକ୍ଷିଣ ଉତ୍ତର ଅନ୍ତର ॥୧୦/୩॥
ଦୁଇଶ ଛସ୍ତରି ଯୋଜନ । ଅଧା ଯୋଜନାଧିକ ପୁଣ ॥୧୦/୪॥
ରେଖା ଭାରତ ମଧ୍ୟନ୍ଦିନ । ପୂର୍ବକୁ ଦୁଇଶ ଯୋଜନ ॥୧୦/୫॥
ଦୂରରେ ନୀଳ ପରବତ । କରନ୍ତି ଲୀଳା ଜଗନ୍ନାଥ ॥୧୦/୬॥
ସାଥିରେ ଭୂଦେବୀ କମଳା । ଭବ ସାଗରେ ସିଏ ଭେଳା ॥୧୦/୭॥
ସେ ପ୍ରଭୁ ମୋ ମନ ଉପରେ । ବିରାଜୁ ଥାନ୍ତୁ ନିରନ୍ତରେ ॥୧୦/୮॥
ସେ ପ୍ରଭୁ ଶଙ୍ଖ କ୍ଷେତ୍ର ବାସୀ । ମୋ ମନ ରଥ ପରେ ବସି ॥୧୦/୯॥
ପୂର୍ଣ୍ଣ କରନ୍ତୁ ମନୋରଥ । ନୀଳାଦ୍ରି ନାଥ ଜଗନ୍ନାଥ ॥୧୦/୧୦॥

## ଚନ୍ଦ୍ର ଗ୍ରହଣ କର୍ତ୍ତା:

ଅକୃତ କୃତକ ରାହୁଂ ଯସ୍ତମସ୍ତ୍ୱାତ୍ କୁଭାଖ୍ୟଂ
ବିଶତି ଶଶିନି ତସ୍ମିନ୍ନାଗମୈର୍ଦୀକ୍ଷିତାନାମ୍ ।
ବିତରତି ମନୁସିଦ୍ଧିଂ ଯଶ୍ଚ ସଦ୍‌ବୈଷ୍ଣବାନାଂ
ସ ଦିଶତୁ କୁଶଳଂ ନଃ ଶ୍ୟାମଶୈଳାବନୀଶଃ ।୧୧।

କୃଷ୍ଣ ବର୍ଣ୍ଣର ସମାନତା ନେଇ ଯେ ପୃଥିବୀ ଛାୟାକୁ ରାହୁରେ ଆରୋପିତ କରି ଅଛନ୍ତି, ଏହି କେତୁରେ ଚନ୍ଦ୍ର ପଶିବା ବେଳେ ଯେ ତାନ୍ତ୍ରିକ ଓ ବୈଷ୍ଣବମାନଙ୍କୁ ମନ୍ତ୍ର ସିଦ୍ଧ କରୁଅଛନ୍ତି ସେହି ନୀଳାଚଳନାଥ ଆସ୍ମମାନଙ୍କର ମଙ୍ଗଳ କରନ୍ତୁ । ।୧୧।

ଏକ ରେଖାରେ ରବି ଶଶୀ । ତା ମଧ୍ୟେ ଯେବେ ପୃଥ୍ୱୀ ପଶି ॥୧୧/୧॥
ଅବନୀ ଛାୟା ରାହୁ ରୂପେ । ପଡ଼ଇ ଶଶୀ ପୃଷ୍ଠେ ଯେବେ ॥୧୧/୨॥
ଚନ୍ଦ୍ର ଗ୍ରହଣ କହି ତାରେ । କେତୁ ଗ୍ରାସଇ ଶଶଧରେ ॥୧୧/୩॥
ତାହା ଗର୍ଭରେ ଚନ୍ଦ୍ର ପଶେ । ସେକାଳେ ମନ୍ତ୍ର ଯିଏ ଘୋଷେ ॥୧୧/୪॥
ତାନ୍ତ୍ରିକ ହେଉ ବା ବୈଷ୍ଣବ । ସିଦ୍ଧି ସେ ଅବଶ୍ୟ ଲଭିବ ॥୧୧/୫॥
ଯେ ପ୍ରଭୁ ତାର ସିଦ୍ଧିଦାତା । ସେ ପ୍ରଭୁ ନାଇ ରାହୁ ଚିତା ॥୧୧/୬॥
ଶଶୀ ସୂରୁଜ ଚକ୍ଷୁ ଯା'ର । ସେ ସର୍ବ ଗ୍ରହଙ୍କ ଆକର ॥୧୧/୭॥
ସେ ପ୍ରଭୁ ଗ୍ରହଗଣେ ଦଣ୍ଡୁ । ମୋର ସମସ୍ତ ପାପ ଖଣ୍ଡୁ ॥୧୧/୮॥



# ସୂର୍ଯ୍ୟ ପରାଗ କର୍ତ୍ତା:

ସ୍ୱର୍ଭାନୁଂ ଶୁଭ୍ରଭାନୁଂ ବିଦଧଦଧ ଉପର୍ଯ୍ୟୁଭ୍ରମଭାନୁମଭା
ଭୂତେର୍ନବ୍ୟାଭ୍ରଭିତ୍ତିଭ୍ରମକରମକରୋଭୂମିଭାଗେଽର୍ଭକାଣାମ୍ ।
ଭୂଭୃଦ୍‌ଭୂମାନୁଭୂତପ୍ରଭୁଭବତନୁଭୂଭାବୁକାଂ ଭୂତିଭାଜଂ
ଭୂତାଳିଂ ଯୋ ବିଧତ୍ତେ ଭବତୁ ଭବଭୟୋଭେଦଭିନ୍ନୋ ବିଭୁଃ ସଃ ୧୨।

ଯାହାଙ୍କୁ ଲୋକେ ଗଣେଶ, ନାରାୟଣ, ଶିବ, ପାର୍ବତୀ ତଥା ସୂର୍ଯ୍ୟ, ଏହି ପଞ୍ଚ ଦେବତା ରୂପେ ପୂଜା କରନ୍ତି, ଯିଏ ଏ ଉପାସକମାନଙ୍କୁ ଐଶ୍ୱର୍ଯ୍ୟ ପ୍ରଦାନ କରନ୍ତି, ଯିଏ ଚନ୍ଦ୍ରକୁ ରାହୁରେ ପରିଣତ କରି ସୁର୍ଯ୍ୟ ପରାଗ ବେଳେ ସୂର୍ଯ୍ୟ ଉପରେ ନୂଆ ମେଘ ଖଣ୍ଡ ଭଳି ଭସାଇ ଦେଇ ଅଜ୍ଞ ଲୋକଙ୍କୁ ଭ୍ରମରେ ପକାନ୍ତି, ସେହି ପରମେଶ୍ୱର ନୀଳାଚଳ ନାଥ ଜଗନ୍ନାଥ ଆମର ତାପତ୍ରୟ ଖଣ୍ଡନ କରି ଆମର ଦୁଃଖ ହରଣ କରନ୍ତୁ ।୧୨।

ଯେ ପ୍ରଭୁ ନାରାୟଣ ରୁଦ୍ର । ଅମ୍ବିକେ ଗଣପତି ସୂର୍ଯ୍ୟ ॥୧୨/୧॥
ଏ ପଞ୍ଚ ଦେବତା ରୂପରେ । ହୁଅନ୍ତି ପୂଜିତ ମହୀରେ ॥୧୨/୨॥
ପାଞ୍ଚ ରୂପରେ ସେହି ଏକେ । ଦ୍ୟନ୍ତି ଐଶ୍ୱର୍ଯ୍ୟ ଉପାସକେ ॥୧୨/୩॥
ଯେ ପ୍ରଭୁ ସୂର୍ଯ୍ୟ ପରାଗରେ । ରାହୁ ବନାଇ ଶଶଧରେ ॥୧୨/୪॥
ରବିଙ୍କୁ ରାହୁ ଗର୍ଭେ ଥୋଇ । ଅଜ୍ଞଙ୍କେ ଦିଅନ୍ତି ଭଣ୍ଡାଇ ॥୧୨/୫॥
ଜ୍ଞାନୀଙ୍କୁ ଅଟଇ ଗୋଚର । ବାରିଦ ଠାରୁ ଦିନକର ॥୧୨/୬॥
ରହିଛି ଅନେକ ଦୂରରେ । ଅନେକ କୋଟି ଯୋଜନରେ ॥୧୨/୭॥
ତଥାପି ଅଜ୍ଞଙ୍କ ପୁରୁଷ । ଭାବନ୍ତି ଯେହ୍ନେ ଭ୍ରମ ବଶ ॥୧୨/୮॥
ଦିନକରକୁ ଘନ ଘନ । କରଇ ବୋଲି ଆଚ୍ଛାଦନ ॥୧୨/୯॥
ଯେ ପ୍ରଭୁ କ୍ଷମ କାର୍ଯ୍ୟେ ଏତେ । ତାରେ ସଂସାର ତାପ କେତେ ॥୧୨/୧୦॥
ଆମ୍ଭ ସଂସାର ତାପ ତିନି । ନାଶନ୍ତୁ ଚକ୍ର ହସ୍ତେ ଘେନି ॥୧୨/୧୧॥
ତା ପାଦ ତଳେ ମୋର ମାଥ । ଦୁଃଖ ହରନ୍ତୁ ଜଗନ୍ନାଥ ॥୧୨/୧୨॥

## ଅଭୟ ଦାତା:

ହସନ୍ତମତିସୁନ୍ଦରାଧର ସୁବୃତ୍ତନେତ୍ରଶ୍ରିୟା
ବସନ୍ତଶିଶୁଚଣ୍ଡ ରକ୍ଶରଦଖଣ୍ଡ ପାଣ୍ଡୁଦ୍ୟୁତୀ ।
ବସନ୍ତମସିତାଚଳେ ବିବିଧଦେଶଲୋକାକୁଳେ
ଦିଶନ୍ତମଭୟଂ ବିଭୁଂ ଭୁବନମଙ୍ଗଳାକ୍ଷଂ ଭଜେ ।୧୩।

ଯେଉଁ ପ୍ରଭୁ ନାନା ବିଦେଶାଗତ ଭକ୍ତ ଗହଳି ଭିତରେ ନୀଳାଚଳରେ ରହି ଭକ୍ତଙ୍କୁ ଅଭୟ ପ୍ରଦାନ କରୁଛନ୍ତି, ଜଗତର ମଙ୍ଗଳ ବିଧାନ କରିବା ଉଦ୍ଦେଶ୍ୟରେ ଯାହାର ବରାବର ଦୃଷ୍ଟି ରହିଛି, ଯାହାର ଲାଲ ଟହଟହ ସୁନ୍ଦର ଅଧର ଓ ଅତି ଗୋଲଗୋଲ ଦୁଇ ଆଖିର ଶୋଭା ଯଥାକ୍ରମେ ବସନ୍ତର ପ୍ରାତଃ ସୂର୍ଯ୍ୟ ଓ ଶରତକାଳୀନ ପୂର୍ଣ୍ଣଚନ୍ଦ୍ରକୁ ପରାସ୍ତ କରୁଛି, ସେହି ନୀଳାଚଳ ନାଥ କାଳିଆ ଠାକୁର ଜଗନ୍ନାଥଙ୍କୁ ମୁଁ ପ୍ରାର୍ଥନା କରୁଛି ।।୧୩।

| | | | |
|---|---|---|---|
| ଯେ ପ୍ରଭୁ ବସି ନୀଳାଚଳେ | । | ପ୍ରସାରି ସ୍ୱହସ୍ତ ଯୁଗଳେ | ॥୧୩/୧॥ |
| ଦେଶବିଦେଶୁ ଭକ୍ତ ଜନେ | । | ଡାକନ୍ତି ଆସ ଖୁସି ମନେ | ॥୧୨/୨॥ |
| ସମସ୍ତ ଭକତେ ଅଭୟ | । | ଦିଅନ୍ତି ପ୍ରଭୁ ଦୟାମୟ | ॥୧୩/୩॥ |
| ଶଶୀ ଭାସ୍କର ଆଖି ଦୁଇ | । | ଅପଲକରେ ଛନ୍ତି ଚାହିଁ | ॥୧୩/୪॥ |
| ଜଗତ ମଙ୍ଗଳ ନିମନ୍ତେ | । | ସମଦୃଷ୍ଟିରେ ଲକ୍ଷ୍ମୀକାନ୍ତେ | ॥୧୩/୫॥ |
| ନାଲି ଟହଟହ ଅଧର | । | ଦିଶଇ କେଡ଼େ ମନୋହର | ॥୧୩/୬॥ |
| ସତେକି ବାସନ୍ତିକ ରବି | । | ପ୍ରାତରେ ଦିଶେ ଯାର ଛବି | ॥୧୩/୭॥ |
| ଚକାଚକା ଦୁଇ ନୟନ | । | ଦେଖିଲେ ପୂରି ଯାଏ ମନ | ॥୧୩/୮॥ |
| ସତେକି ଶାରଦୀୟ ଜହ୍ନ | । | ଯେହ୍ନେ ଦିଶଇ ଥିଲେ ପୂର୍ଣ୍ଣ | ॥୧୩/୯॥ |
| କେହି ବି ନୁହେଁ ଯାହା ପରି | । | ଯେ ପାରେ ସର୍ବ ରୂପ ଧରି | ॥୧୩/୧୦॥ |
| ତା ପାଦେ କରୁଛି ପ୍ରାର୍ଥନା | । | ସେ ପ୍ରଭୁ ମୋ କାଳିଆ ସୁନା | ॥୧୩/୧୧॥ |

# ପତିତପାବନଃ

ଅମ୍ବୁଦାବଳିବିଡମ୍ବିତତନୁଶ୍ରୀ
ରମ୍ବୁରାଶି ତଟବିସ୍ଫୁଟଧାମା ।
କମ୍ବୁପତ୍ତନପତିଃ ପତିତାନାଂ
ସଂବ୍ୟୁଦସ୍ୟତୁ ତମଃ ପଟଳଂ ନଃ ।୧୪।

ପୂର୍ବ ସାଗର ତୀରରେ ବାସ କରୁଥିବା ଯେଉଁ ପ୍ରଭୁ ନିଜ କାନ୍ତି ଦ୍ୱାରା ନୀଳ ଜଳଧର କାନ୍ତିକୁ ତିରସ୍କାର କରନ୍ତି, ସେହିପ୍ରଭୁ ଜଗନ୍ନାଥ ଆମପରି ପତିତମାନଙ୍କର ଅଜ୍ଞାନ ଅନ୍ଧକାର ସମୂହକୁ ନଷ୍ଟ କରନ୍ତୁ ।୧୪।

ଯା କାନ୍ତି କରେ ତିରସ୍କାର । କାନ୍ତିକୁ ନୀଳ ଜଳଧର ॥୧୪/୧॥
ପୂରୁବ ସାଗରର ତୀରେ । ବସି ଯେ ଭକ୍ତ ଦୁଃଖ ହରେ ॥୧୪/୨॥
ସିଏ ମୋ କାଳିଆ ସାଆନ୍ତ । ଦୁଃଖ ହରଣେ ବଳବନ୍ତ ॥୧୪/୩॥
ମୋ ନାଥ ଜଗନ୍ନାଥ ସେହି । ସଂସାରେ ଯେତେ ଛନ୍ତି ରହି ॥୧୪/୪॥
ଆମରି ପରି ଯେ ପତିତ । ସଂସାର ଜାଲରେ ଛନ୍ଦିତ ॥୧୪/୫॥
ଅଜ୍ଞାନ ଅନ୍ଧକାରେ ବନ୍ଦି । ମାୟା ମୋହରେ ହୋଇ ବାନ୍ଧି ॥୧୪/୬॥
ଅଜ୍ଞାନ ଅମା ଅନ୍ଧକାର । କରନ୍ତୁ ଆମର ସେ ଦୂର ॥୧୪/୭॥
ସେ ପ୍ରଭୁ ବଡ଼ କାରୁଣିକ । ନାହିଁ ମୋ ଏଥେ ଟିକେ ଦକ ॥୧୪/୮॥
ମୋ ପ୍ରଭୁ ସର୍ବ ସମରଥ । ପାଦେ ତା ରହୁ ମୋର ମାଥ ॥୧୪/୯॥
ତା ପାଦେ ମୋର ରହୁ ମନ । ମୋତେ ଉଦ୍ଧାରୁ ଭଗବାନ ॥୧୪/୧୦॥



## କଳ୍ପବଟ:

ପଟାପଟୁରୁଚୀକୃତପ୍ରକଟହାଟକଶ୍ରୀର୍ଜଗତ-
କଟାହଘଟନାସ୍ଫୁଟୋତ୍କଟକଟାକ୍ଷ ପାତକ୍ରମଃ ।
ବଟଦ୍ରୁମତଟୋଦ୍‌ଭଟଦ୍ୟୁତିରନିଷ୍ଟକୂଟାଟବୀଂ
ଫଟାଧରଫଟାଛଟାନଟନପାଟବୀପାଟୟେତ୍ ।୧୫।

ପରିହିତ ବସ୍ତ୍ର ଦ୍ୱାରା ଯେ ଶୁଦ୍ଧ ସୁବର୍ଣ୍ଣର କାନ୍ତିକୁ ତିରସ୍କୃତ କରନ୍ତି, ବ୍ରହ୍ମାଣ୍ଡ ରୂପକ କଡ଼େଇର ଯଥାଯଥ ରଚନାରେ ଯେ ବରାବର ତୀକ୍ଷ୍ଣ ଦୃଷ୍ଟି ରଖିଛନ୍ତି, ଯେ ଫଣୀ କାଳୀୟର ଫଣା ଉପରେ ନୃତ୍ୟର ପଟୁତା ଦେଖାଇଥିଲେ, କଳ୍ପବଟର ନିକଟରେ ମହାଦ୍ୟୁତି ଦେଖାଉଥିବା ସେହି ମହାପ୍ରଭୁ ଜଗନ୍ନାଥ ମୋର ଅନିଷ୍ଟ ରୂପକ ବନକୁ ନାଶ କରନ୍ତୁ ।୧୫।

| | | | |
|---|---|---|---|
| ପିନ୍ଧିଲା ବସନ ଯାହାର | । | ସୁବର୍ଣ୍ଣେ କରେ ତିରସ୍କାର | ॥୧୫/୧॥ |
| ବ୍ରହ୍ମାଣ୍ଡ ରୂପକ କଡ଼େଇ | । | ଯଥାଯଥ ଯେ ଗଢ଼ିଛଇଁ | ॥୧୫/୨॥ |
| ପାଳନ ପୋଷଣ ତାହାର | । | କରେ ଯା ତୀକ୍ଷଣ ନଜର | ॥୧୫/୩॥ |
| ଯେ ପ୍ରଭୁ କୃଷ୍ଣ ଅବତାରେ | । | ଜନମି କଂସ ବନ୍ଦୀ ଘରେ | ॥୧୫/୪॥ |
| କାଳୀୟ ନାଗ ଫଣା ପରେ | । | ନାଚିଛି ଯେ ନଟ ଭାବରେ | ॥୧୫/୫॥ |
| ଯେ ପ୍ରଭୁ କଳପ ବଟର | । | ନିକଟେ ଦେଖାଏ ସୁନ୍ଦର | ॥୧୫/୬॥ |
| କଳ୍ପବଟ ସ୍ୱରୂପ ସିଏ | । | ଯେ ଯାହା ଇଚ୍ଛେ ତାକୁ ଦିଏ | ॥୧୫/୭॥ |
| ଚାଲୁଣୀ ପରାଏ ଯା ଆଖି | । | ଦେଖିଲେ ଆଖି ଯାଏ ଲାଖି | ॥୧୫/୮॥ |
| ସେ ପ୍ରଭୁ ଜଗତର ନାଥ | । | ଅରକ୍ଷ ଜନଙ୍କର ନାଥ | ॥୧୫/୯॥ |
| ସଙ୍ଗରେ ନେଇ ଭାଇ ଭଗ୍ନି | । | ନାଶୁ ସଂସାର ତାପ ତିନି | ॥୧୫/୧୦॥ |
| ନାଶନ୍ତୁ ମୋ ଅନିଷ୍ଟ ବନ | । | ସଙ୍କଟ ହାରୀ ଭଗବାନ | ॥୧୫/୧୧॥ |

## ପାଳନ କର୍ତ୍ତା:

ବନ୍ଦାମହେ ହରିହୟଦ୍ରୁହିଣାହିରାଜ-
ହେରମ୍ବଶମ୍ବରହରାରିହିମାଂଶୁହଂସୈଃ ।
ଅର୍ହାସ୍ପଦୀକୃତପଦାମ୍ବୁରୁହଂ ସହସ୍ର-
ବାରାନ୍ମହେନ୍ଦ୍ରମଣିହାରି ମହୋ ମହୀୟଃ ।୧୬।

ଯାହାର ପାଦକୁ ଇନ୍ଦ୍ର, ବ୍ରହ୍ମା, ବାସୁକି, ଗଣେଶ, ଶିବ, ଚନ୍ଦ୍ର ଓ ସୂର୍ଯ୍ୟ ପୂଜା କରୁଛନ୍ତି, ଯିଏ ଇନ୍ଦ୍ରମଣି ପରି ଦେଖାଯାଉଛନ୍ତି ସେହି ଅତି ପୂଜ୍ୟ ଜଗନ୍ନାଥଙ୍କର ତେଜଯୁକ୍ତ କାନ୍ତିକୁ ମୁଁ ହଜାରେ ବାର ପ୍ରଣାମ କରୁଛି । ।୧୬।

| | | | |
|---|---|---|---|
| ଯେ ପ୍ରଭୁ ଦିବ୍ୟ ରୂପକାନ୍ତି | । | ଇନ୍ଦ୍ରମଣିକି ଜିଣି ଜ୍ୟୋତି | ॥୧୬।୧॥ |
| ଭଜି ପାଦପଦ୍ମ ଯାହାର | । | ସଂହାର କରନ୍ତି ଶଙ୍କର | ॥୧୬।୨॥ |
| ଅବନୀ ଭାରାକୁ ବହୁଛି | । | ବାସୁକୀ ଯା ନାମକୁ ଜପି | ॥୧୬।୩॥ |
| ସରଗ ରାଜ୍ୟେ ଦେବଇନ୍ଦ୍ର | । | ପାଳନ କରେ ଧରି ବଜ୍ର | ॥୧୬।୪॥ |
| ଯାହାର ଆଦେଶର ବଳେ | । | ସେ ପ୍ରଭୁ ଛନ୍ତି ନୀଳାଚଳେ | ॥୧୬।୫॥ |
| ବ୍ରହ୍ମା ଗଣେଶ ଚନ୍ଦ୍ର ସୂର୍ଯ୍ୟ | । | ଯା ବଳେ ଭୋଗନ୍ତି ଐଶ୍ୱର୍ଯ୍ୟ | ॥୧୬।୬॥ |
| ଅଛନ୍ତି ଯା' ପାଦକୁ ଧ୍ୟାୟୀ | । | ସେ ପ୍ରଭୁ ନୀଳାଚଳ ସାଇଁ | ॥୧୬।୭॥ |
| ତେଜ ଯା ଅତି ମନୋହର | । | ନମେ ତା ପାଦେ ବାରବାର | ॥୧୬।୮॥ |



## କାମନା ରୋଗ ନାଶକାରୀ:

କ୍ଷାରୋଦରୋଧସି ଧରୋପରି ରୋଚମାନଃ
ସାରୋଜବାନ୍ଧବି-ସରୋଷତରୋକ୍ତିରୋପାତ୍ ।
ନାରୋପଗୋପନପରୋଽରିଧରୋ ବିରୋଧି-
ମାରୋତ୍ଥରୋଗନିକରୋପରତିଂ କରୋତୁ ।୧୭।

ଯେଉଁ ସୁଦର୍ଶନ ଚକ୍ରଧାରୀ ଶ୍ରୀଜଗନ୍ନାଥ ଲବଣ ସମୁଦ୍ର ତୀରବର୍ତ୍ତୀ ଭୂମିରେ ଶୋଭାପାଉଛନ୍ତି, ଯେ ସୂର୍ଯ୍ୟପୁତ୍ର ଯମର କ୍ରୁଦ୍ଧ ବଚନ ସମୂହରୁ ନରମାନଙ୍କୁ ରକ୍ଷା କରୁଛନ୍ତି ସେ କାମ ଶତ୍ରୁ ଜନିତ ସମସ୍ତ ରୋଗ ନାଶ କରନ୍ତୁ । ।୧୭।

ପୂରୁବ ଲବଣ ସାଗର । ତଟରେ ଅଛି କ୍ଷେତ୍ରବର ॥୧୭/୧॥
ପୁରୁଷୋତ୍ତମ ଯାର ନାମ । ସେ କ୍ଷେତ୍ରେ ନ ପଶଇ ଯମ ॥୧୭/୨॥
ଯେ ପିଣ୍ଡ ଛାଡ଼ଇ ସେ କ୍ଷେତ୍ରେ । ନିଅନ୍ତି ତାଙ୍କୁ ବିଷ୍ଣୁଦୂତେ ॥୧୭/୩॥
ସେହି କ୍ଷେତ୍ରର ଅଧିକାରୀ । ସୁଦରଶନ ଚକ୍ରଧାରୀ ॥୧୭/୪॥
ପ୍ରଭୁ ଶ୍ରୀ ନୀଳାଚଳ ନାଥ । ଜଗତ ନାଥ ଜଗନ୍ନାଥ ॥୧୭/୫॥
ଯମ ଯେ ସୂର୍ଯ୍ୟର ସନ୍ତାନ । ତାହାର କ୍ରୋଧିତ ବଚନ ॥୧୭/୬॥
ପ୍ରଭୁ ତା' ପ୍ରଭାବୁ ରଖଇ । ଅଶରଣ ଶରଣ ସେହି ॥୧୭/୭॥
ଜୀବକୁ ଯେତେ ବ୍ୟାଧି ଗ୍ରାସେ । କାମନା କାରଣୁ ପ୍ରକାଶେ ॥୧୭/୮॥
ପତିତପାବନ ତା ବାନା । ଡ଼ାକଇ ନୀଳଚକ୍ରେ ଅନା ॥୧୭/୯॥
ଆସ ହେ ଆସ ହେ ପତିତ । କାମନା ରୋଗେ ଜର୍ଜରିତ ॥୧୭/୧୦॥
ଡାକି ସେ ରୋଗୀ ରୋଗ ନାଶ । କରନ୍ତି ପ୍ରଭୁ ନୀଳାଦ୍ରୀଶ ॥୧୭/୧୧॥
ମୋହର କାମନା ଅଇରି । ନାଶହେ ନୀଳଗିରି ଶିରି ॥୧୭/୧୨॥

## ଦୈବାଧିନ ମନ:

ଯସ୍ୟେଚ୍ଛା ମେ ନିଜଭଜନତୋ ଦୂରମୁତ୍ସାର୍ଯ୍ୟ ବୁଦ୍ଧିଂ
ଦୈବାଧୀନାଂ ଗଣିତବିପଣୌ ପାତୟତ୍ୟାତତାୟାମ୍ ।
ସଂଖ୍ୟାତୀତାନୁ ଗତପତିତୋଦ୍ଧାରକାରୁଣ୍ୟସିନ୍ଧୁଃ
ସ ସ୍ୟାଚ୍ଚେତଃ ଶରଣଚରଣଃ ସିନ୍ଧୁଜାପ୍ରାଣବନ୍ଧୁଃ ।୧୮।

ସର୍ବଦା ବିଷ୍ଣୁ ଭଜନକୁ ଭଲ ପାଉଥିବା ମୋର ବୁଦ୍ଧିକୁ ଯିଏ ନିଜ ଇଚ୍ଛାରେ ବିସ୍ତୃତ ଗଣିତ ବଜାରରେ ଠେଲିପେଲି ପୂରାଇ ଦେଇଛି ଓ ମୋ ମନ ଦୈବାଧୀନ ହୋଇ କାର୍ଯ୍ୟ କରୁଛି, ସେହି କୃପାସିନ୍ଧୁ ସମୁଦ୍ର ତନୟା ଲକ୍ଷ୍ମୀଙ୍କର ପ୍ରାଣବନ୍ଧୁ, ଅସଂଖ୍ୟ ଅନୁଗତ ପତିତମାନଙ୍କୁ ଉଦ୍ଧାର କରିବାରେ ଦୟାର ସାଗର ସାଜିଥିବା ଜଗନ୍ନାଥଙ୍କ ଚରଣ ଯୁଗଳ ମୋର ଏହି ବୁଦ୍ଧିର ଆଶ୍ରୟ ସ୍ଥଳ ହେଉ ।୧୮।

ଯାହା ଇଚ୍ଛାରେ ମୋର ମନ । ପ୍ରିୟ ଯାର ବିଷ୍ଣୁ ଭଜନ ॥୧୮/୧॥
ଗଣିତ ବଜାରକୁ ନେଇ । ଠେଲି ଯେ ଦେଇଛି ପୂରାଇ ॥୧୮/୨॥
ଆକର୍ଷଣର କେନ୍ଦ୍ର ବିନ୍ଦୁ । ପାପା କର୍ଷଣେ ଦୟାସିନ୍ଧୁ ॥୧୮/୩॥
ସେ ମୋର ମନ ଆକର୍ଷିଛି । ଗଣିତେ ଲଗାଇ ଦେଇଛି ॥୧୮/୪॥
ଭାବଇ ବୁଦ୍ଧି ଏବେ ମୋର । କବଳେ ପଡ଼ିଛି ଦୈବର ॥୧୮/୫॥
ମାନୁ ସେ ନାହିଁ ମୋ ବଚନ । ହୋଇଛି ପ୍ରଭୁର ଅଧୀନ ॥୧୮/୬॥
ସେ ପ୍ରଭୁ ମୋର କୃପାସିନ୍ଧୁ । ସିନ୍ଧୁ ତନୟା ପ୍ରାଣବନ୍ଧୁ ॥୧୮/୭॥
ପତିତ ଯେତେ ଅନୁଗତ । ଅଛନ୍ତି ସଂସାରେ ଭକତ ॥୧୮/୮॥
ଉଦ୍ଧାରଣ ଅର୍ଥେ ତାଙ୍କର । ସେ ପ୍ରଭୁ ଦୟାର ସାଗର ॥୧୮/୯॥
ହେଉ ତା ଚରଣ ଯୁଗଳ । ମୋ ବୁଦ୍ଧିର ଆଶ୍ରୟ ସ୍ଥଳ ॥୧୮/୧୦॥

# ଦର୍ଶନ ମାତ୍ରେ ମୁକ୍ତିଃ

ଜଳଜନାଭିବିଭୂଷଣବିଗ୍ରହୋ-
ଜଳଜସମ୍ଭବରାଜଦନୁଗ୍ରହଃ ।
ଜଳଜନା-ଜନି କାରଣ ଦର୍ଶନୋ
ଜଳଜନାଭିରଭୀତି କରୋଽସ୍ତୁନଃ ।୧୯।

ଯେଉଁ ପ୍ରଭୁର ନାଭିପଦ୍ମରେ ବିଭୂଷିତ ବ୍ରହ୍ମାଙ୍କ ଠାରେ ତାଙ୍କର ବିଶେଷ ଅନୁଗ୍ରହ, ଯାହାଙ୍କ ଦର୍ଶନ ମାତ୍ରେ କୁମ୍ଭୀର ଜନ୍ମ ମରଣ ଚକ୍ରରୁ ରକ୍ଷା ପାଇଗଲା, ସେହି ପଦ୍ମନାଭ ପ୍ରଭୁ ଜଗନ୍ନାଥ ଆମ୍ଭମାନଙ୍କର ଭବଭୟ ଦୂର କରନ୍ତୁ । ।୧୯।

ନାଭିରୁ ଜାତ ଯେ ପ୍ରଭୁର । କମଳେ ବସି ବେଦବର ॥୧୯/୧॥
ବିଶ୍ୱବ୍ରହ୍ମାଣ୍ଡକୁ ସର୍ଜଇ । ସେ ପ୍ରଭୁ ଅନୁଗ୍ରହ ପାଇ ॥୧୯/୨॥
ପୂର୍ବ ଜନମ କର୍ମ ଫଳେ । ପଡ଼ିଣ ନକ୍ରର କବଳେ ॥୧୯/୩॥
ଡାକିଲା କୁମ୍ଭୀର କବଳୁ । ଉଦ୍ଧାର କର ହେ କୃପାଳୁ ॥୧୯/୪॥
ଗଜର ଡାକ କର୍ଣ୍ଣେ ଶୁଣି । ଚକ୍ର ପେଶିଣ ନକ୍ର ହାଣି ॥୧୯/୫॥
କାଳ ରୂପକ ଗ୍ରାହ ଫାଶ । ତୋ ଯୋଗୁଁ ଲଭିଲା ବିନାଶ ॥୧୯/୬॥
ଦର୍ଶନ ମାତ୍ରକେ ତୁମର । ମୁକତି ଲଭିଲା କୁମ୍ଭୀର ॥୧୯/୭॥
ଚୌରାଶୀ ଲକ୍ଷ ଯୋନି ଚକ୍ରୁ । ଉଦ୍ଧାର କଲ ପ୍ରଭୁ ତାକୁ ॥୧୯/୮॥
ଭକତ ଗଜ ଥାଉ ଗଲା । କୁମ୍ଭୀର ବୈକୁଣ୍ଠେ ବସିଲା ॥୧୯/୯॥
ଏମନ୍ତ ଦୟାଳୁ ମୋ ନାଥ । ପଦ୍ମନାଭ ସେ ଜଗନ୍ନାଥ ॥୧୯/୧୦॥
ନୀଳାଚଳରେ ତାର ବାସ । ତାର ଚରଣେ ମୋର ଆଶ ॥୧୯/୧୧॥
ଭୟ ନାଶନେ ଯେ ଶମନ । ତା ପଦେ ଥାଉ ମୋର ମନ ॥୧୯/୧୨॥

# ଜଗା ବଳରେ ବଳିୟାର:

ସୂର୍ଯ୍ୟସ୍ଥୈର୍ଯ୍ୟୋକ୍ତିସୂତୈଃ କ୍ଷିତିଗତିକୃତିନାଂ ବ୍ୟାଜରାଜଦ୍ଧମାପ୍ତଃ
ସିଦ୍ଧାନ୍ତସ୍ୱର୍ଣ୍ଣଗୋତ୍ରଃ ପ୍ରକୃତିମୁପଗତୋ ଯକ୍ତପାଷର୍ଣନୋତ୍ଥୈଃ ।
ଅସ୍ମଜ୍ଜିହ୍ୱାଗ୍ରଜାଗ୍ରଜ୍ଜଳନିଧିବସନାସ୍ଥେମ ସଦ୍ୟୁକ୍ତି ବହ୍ନି-
ଜ୍ୱାଳୈର୍ଭୂୟୋଽପି ସୋଽୟଂ କଳୟତୁ କୁଶଳଂ ଶ୍ରୀଳନୀଳାଚଳେନ୍ଦୁଃ ।୨୦।

ଯେଉଁ ପ୍ରଭୁର କୃପା ଫଳରେ ମୋ ଜିହ୍ୱାରୁ ସାଗର ବସନା ପୃଥିବୀର ସ୍ଥିରତା ନିମନ୍ତେ ଅନେକ ଯୁକ୍ତି ବାହାରି ସୂର୍ଯ୍ୟ ସ୍ଥିର ମତବାଦ ରୂପକ ସ୍ୱର୍ଣ୍ଣ ପର୍ବତକୁ ଦ୍ରବିଭୂତ କରିଦେଲା, ସେହି ଶ୍ରୀ ନୀଳାଚଳର ଚନ୍ଦ୍ର ଶ୍ରୀ ଜଗନ୍ନାଥ ସମସ୍ତଙ୍କର କୁଶଳ ବିଧାନ କରନ୍ତୁ ।୨୦।

| | | | |
|---|---|---|---|
| ଯେ ପ୍ରଭୁ କୃପାରୁ ଅସୀମ | । | ଯୁକତି ବଳେ ଏ ଅଧମ | ॥୨୦/୧॥ |
| ସୂର୍ଯ୍ୟକୁ କହି ଯିଏ ସ୍ଥିର | । | କରି ତା ଶିରରେ ପ୍ରହାର | ॥୨୦/୨॥ |
| ପୃଥିବୀ ଅଚଳ ଯେ ମତ | । | ଅପେକ୍ଷିକ ନାମେ ଯେ ତତ୍ତ୍ୱ | ॥୨୦/୩॥ |
| ସେ ତତ୍ତ୍ୱ ପ୍ରୟୋଗ କରିଣ | । | ଯା ବଳେ କରିଛି ପ୍ରମାଣ | ॥୨୦/୪॥ |
| ହୋଇ ସେ ପ୍ରଭୁ ହୃଦଗତ | । | କରିଛି ତାରେ ପ୍ରତିଷ୍ଠିତ | ॥୨୦/୫॥ |
| ସୂର୍ଯ୍ୟ ପୃଥିବୀ ଦୁହେଁ ଚଳ | । | ସଂସାରେ ନୁହେଁ କେ ଅଚଳ | ॥୨୦/୬॥ |
| ଯିଏ ଆମକୁ ଅଛି ଧରି | । | ତାରେ ଅଚଳ ବୋଲି କରି | ॥୨୦/୭॥ |
| ଗଣିତର ଯେ ଗୂଢ଼ତତ୍ତ୍ୱ | । | ସିଦ୍ଧାନ୍ତେ ମୋ ସନ୍ନିବେଶିତ | ॥୨୦/୮॥ |
| ନୀଳାଚଳ ସିଂହ ପ୍ରସାଦେ | । | ପାରିବ କିଏ ଖଣ୍ଡି ପଦେ | ॥୨୦/୯॥ |
| ଆମର ଏଥେ ଦୃଷ୍ଟିଭ୍ରମ | । | ଯେ ପ୍ରଭୁ ର ଏ ପରାକ୍ରମ | ॥୨୦/୧୦॥ |
| ସେ ପ୍ରଭୁ ବିଜେ ନୀଳାଚଳ | । | ବନ୍ଦେ ମୁଁ ତା ପାଦ ଯୁଗଳ | ॥୨୦/୧୧॥ |
| ଅଚଳ ମହାମେରୁ ଯିଏ | । | ଚଳ କରିବ ତାରେ କିଏ | ॥୨୦/୧୨॥ |
| ନୀଳାଦ୍ରି ନାଥ ଯେ ଅଚଳ | । | ଭକ୍ତ କରଇ ତାରେ ଚଳ | ॥୨୦/୧୩॥ |
| ପ୍ରଭୁ ମୋ ନୀଳାଦ୍ରି ବିହାରୀ | । | କୁଶଳ କରନ୍ତୁ ମୋହରି | ॥୨୦/୧୪॥ |

## କଳା ଠାକୁର:

ନୀଳାରବିନ୍ଦସୁମିଳିନ୍ଦକଳିନ୍ଦଜେନ୍ଦ୍ର-
ନୀଳାମ୍ବୁଦାଳି-ଦଳିତାଞ୍ଜନ ପୁଞ୍ଜମଞ୍ଜୁମ୍ ।
ନୀଳାଚଳାଧରଶିରୋମୁକୁଟାୟମାନଂ
ନୀଳାମ୍ବରାନୁଜମଜଂ ଶରଣଂ ବ୍ରଜାମଃ ।୨୧।

ଯେଉଁ ପ୍ରଭୁ ନୀଳକମଳ, ଶ୍ରେଷ୍ଠ ଭ୍ରମର, ଯମୁନା, ଇନ୍ଦ୍ରନୀଳମଣି, ମେଘ ପଟଳ ଓ କଳା କଜ୍ଜ୍ୱଳ ରାଶିର ମିଶ୍ରିତ କଳାପରି ସୁନ୍ଦର ଚିକ୍କଣ କଳା, ନୀଳଗିରିର ମସ୍ତକରେ ମୁକୁଟପରି ଶୋଭିତ, ବଳଦେବଙ୍କ ସାନଭାଇ ଏବଂ ଯେ ନିତ୍ୟ ଅଟନ୍ତି ସେଇ ଦାରୁବ୍ରହ୍ମରୂପୀ ଶ୍ରୀଜଗନ୍ନାଥଙ୍କଠାରେ ଆମ୍ଭେମାନେ ଶରଣ ଯାଉଅଛୁଁ ।୨୧।

ନୀଳକମଳ ଜିଣି କାନ୍ତି । ଭ୍ରମର ବରକୁ ନିନ୍ଦନ୍ତି ॥୨୧/୧॥
ସତେକି ଯମୁନାର ପାଣି । ସ୍ୱରୂପେ ଇନ୍ଦ୍ରନୀଳମଣି ॥୨୧/୨॥
ଗଗନେ କି ମେଘ ପଟଳ । ନିନ୍ଦାକରେ କଳାକଜ୍ଜଳ ॥୨୧/୩॥
ମିଶ୍ରିତ କଳା ଏ ସବୁର । ଚିକ୍କଣ କଳା ସେ ସୁନ୍ଦର ॥୨୧/୪॥
ସେ ପ୍ରଭୁ ମୋ କାଳିଆ ହାତୀ । ନୀଳ ପର୍ବତେ ଯାର ସ୍ଥିତି ॥୨୧/୫॥
ନୀଳଗିରି ଶିର ମୁକୁଟ । ପ୍ରିୟଟି ଯାହାର ଭକତ ॥୨୧/୬॥
ବଳଦେବଙ୍କ ସାନଭାଇ । ଅନିତ୍ୟ ମର୍ତ୍ତ୍ୟେ ନିତ୍ୟ ସେଇ ॥୨୧/୭॥
ଦାରବ ତନୁ ବ୍ରହ୍ମରୂପୀ । ଜଗତନାଥ ବିଶ୍ୱବ୍ୟାପୀ ॥୨୧/୮॥
ତାହାର କମଳ ଚରଣ । ଯୁଗଳେ ମୋହର ଶରଣ ॥୨୧/୯॥
ରଖୁ ନ ରଖୁ ସେ ମୋ ନାଥ । କମଳା ପତି ଜଗନ୍ନାଥ ॥୨୧/୧୦॥

## ଶଙ୍ଖକ୍ଷେତ୍ର:

ଶଂଖାସୁରାସୁହୃତି-ନିନ୍ଦିତ ଦେବବୃନ୍ଦଃ
ଶଂଖାରିସୁନ୍ଦରତରାଗ୍ରକରାରବିନ୍ଦଃ ।
ଶଂଖାକୃତିକ୍ଷିତିପତିଃ ପ୍ରତନୋତୁ ନିତ୍ୟଂ
ଶଂଖାଦିଭୂତମୟକାୟନିକାୟଭାଜାମ୍ ।୨୨।

ଶଙ୍ଖାସୁରର ପ୍ରାଣ ନେଇ ଯେ ଦେବତାମାନଙ୍କୁ ଆନନ୍ଦ ଦେଇ ପାରିଲେ, ଯାହାର କରପଦ୍ମ ଶଙ୍ଖ ଏବଂ ଚକ୍ରଦ୍ୱାରା ବେଶି ସୁନ୍ଦର ଦେଖା ଯାଉଛି, ଶଙ୍ଖକ୍ଷେତ୍ରର ଯେ ଅଧିପତି ସେହି ପ୍ରଭୁ ଆକାଶଦି ପଞ୍ଚଭୂତମୟ ଶରୀରଧାରୀ ଆମମାନଙ୍କର ମଙ୍ଗଳବିଧାନ ପୂର୍ବକ ଆନନ୍ଦ ବର୍ଦ୍ଧନ କରନ୍ତୁ । ।୨୨।

ଶଙ୍ଖାସୁରର ପ୍ରାଣନେଇ । ଅମରେ ଯେ ଆନନ୍ଦ ଦେଇ ॥୨୨/୧॥
ଚତୁର୍ଭୁଜେ ଚାରି ଆୟୁଧ । ଶଙ୍ଖ ଚକ୍ର ଯେ ଗଦା ପଦ୍ମ ॥୨୨/୨॥
ଦିଶନ୍ତି ଅତୀବ ସୁନ୍ଦର । ନୀଳଜୀମୂତ କଳେବର ॥୨୨/୩॥
ପୁରୁଷୋତ୍ତମ ଶଙ୍ଖକ୍ଷେତ୍ର । ଯାହାର ନାମ ଶିରିକ୍ଷେତ୍ର ॥୨୨/୪॥
ଯେ ନୀଳକନ୍ଦରେ ବସିଛି । ସକଳ ମନକୁ ମୋହୁଛି ॥୨୨/୫॥
କମଳା ଯାହାର ଅର୍ଦ୍ଧାଙ୍ଗୀ । ଭାଇ ଭଉଣୀ ଯାର ସଙ୍ଗୀ ॥୨୨/୬॥
ସେ ପ୍ରଭୁ ବିଘ୍ନ ବିନାଶକ । ଭକତ ଆନନ୍ଦ ବର୍ଦ୍ଧକ ॥୨୨/୭॥
ଜଗତନାଥ ଜନାର୍ଦ୍ଦନ । ମଙ୍ଗଳ କରନ୍ତୁ ବର୍ଦ୍ଧନ ॥୨୨/୮॥



# ମହାପ୍ରସାଦ:

କୃତପ୍ରତିନିବୃତ୍ତୟୋ ମନୁଜବୀଥୟୋଯନ୍ମହା
ପ୍ରସାଦପରିପୂରିତୋଦରକରାନନାଃ ପାବନାଃ ।
ପୁନନ୍ତି ପତିତାନ୍ ପଥି ସ୍ୱତନୁମାରୁତୈର୍ନିର୍ମାଦୃଶୋ
ଦୃଶୋର୍ବହତୁ ମେଽନ୍ୱହଂ ମହମଦୋ ମହାନ୍ତଂ ମହଃ ।୨୩।

ଯେଉଁ ପ୍ରଭୁର ମହାପ୍ରସାଦ ହାତ, ପାଟି ଓ ଉଦରସ୍ଥ କରି ଲୋକେ ପୁଣି ଜନ୍ମ ହେବାରୁ ରକ୍ଷା ପାନ୍ତି ଏବଂ ସେମାନଙ୍କର ଶରୀର ପବନଦ୍ୱାରା ଆମଭଳି ପତିତମାନଙ୍କର ଉଦ୍ଧାର ହୋଇଯାଏ, ସେହି ପ୍ରଭୁ ଜଗନ୍ନାଥଙ୍କ ତେଜକାନ୍ତି ପ୍ରତ୍ୟହ ମୋର ମାନସପଟରେ ରହି ମୋତେ ଆନନ୍ଦ ଓ ସୁଖ ପ୍ରଦାନ କରୁଥାଉ । ।୨୩।

ଯେ ପ୍ରଭୁର ମହାପ୍ରସାଦ । ପାପ ନାଶକ ପୁଣ୍ୟ ପ୍ରଦ ॥୨୩/୧॥
ଜନମ ଠାରୁ ମୃତ୍ୟୁ ଯାଏଁ । ଭକତ ପାଇଁ ଲୋଡ଼ା ହୁଏ ॥୨୩/୨॥
ଟୋପାଏ ତା ନିର୍ମାଲ୍ୟ ପାଣି । ନ ଦେଲେ ମୁଖେ ତାର ଆଣି ॥୨୩/୩॥
ପିଣ୍ଡରୁ ପ୍ରାଣ ନ ଛାଡ଼ଇ । ତାକୁ ସେ ରହଇ ଅନାଇଁ ॥୨୩/୪॥
ଏମନ୍ତେ ଯେ ମହାପ୍ରସାଦ । ଯାରେ ଖୋଜନ୍ତି ବ୍ରହ୍ମା ଶିବ ॥୨୩/୫॥
ହସ୍ତେ ମୁଖେ ଉଦରେ ଦେଇ । ପବିତ୍ର ଜୀବ ପିଣ୍ଡ ହୋଇ ॥୨୩/୬॥
ପ୍ରପଞ୍ଚୁ ଜନମ ମରଣ । ମୁକତି ଲଭେ ତତକ୍ଷଣ ॥୨୩/୭॥
ମହାପ୍ରସାଦ ପାଏ ଯିଏ । ତା ତନୁ ଯେ ପବନ ଛୁଏଁ ॥୨୩/୮॥
ସ୍ପର୍ଶ ପାଇଲେ ସେ ପବନ । ପତିତ ପ୍ରାଣ ହୁଏ ଧନ୍ୟ ॥୨୩/୯॥
ହୁଅଇ ତାହାର ଉଦ୍ଧାର । ଉଦ୍ଧାର କରନ୍ତି ଈଶ୍ୱର ॥୨୩/୧୦॥
ସେ ପ୍ରଭୁ ପରିତ୍ରାଣ କର୍ତ୍ତା । ଭବ ସଂସାରେ ବଳବନ୍ତା ॥୨୩/୧୧॥
ସେ ଜଗନ୍ନାଥ ମହାବାହୁ । ମାନସପଟେ ସଦା ରହୁ ॥୨୩/୧୨॥
ବଢୁ ମୋର ଆନନ୍ଦ ସୁଖ । ନୀଳ ସୁନ୍ଦର ପଦ୍ମ ମୁଖ ॥୨୩/୧୩॥
ତାର ସୁନ୍ଦର ରୂପକାନ୍ତି । ଦେଖିପାଇବି ମୁହିଁ ଶାନ୍ତି ॥୨୩୧୪॥
ତାର ଲୀଳା ପରବ ଯେତେ । ଦେଖିବି ସର୍ବଦା ମୁଁ ନେତ୍ରେ ॥୨୩/୧୫॥
କର ହେ ଏହି ଦୟା ମୋତେ । ଶରଣ ତୋର ପାଦଗତେ ॥୨୩/୧୬॥
ମୋ ପରେ ଥାଉ ଦୟା ଏହି । ମୋତେ ଉଦ୍ଧର ଭାବଗ୍ରାହୀ ॥୨୩/୧୭॥

# ଭକ୍ତ ଠାରେ ଅହେତୁକି କୃପା:

ହୃତ୍ପ୍ରାଣେନ୍ଦ୍ରିୟରୋଧଶୋଧିତତମକ୍ରୋଧ ସ୍ମରାଦିଦ୍ୱିଷଃ-
ପଞ୍ଚକ୍ଲେଶମୁଚୋ ନ ଯତ୍ କ୍ଷଣମପି ଦ୍ରଷ୍ଟୁଂ କ୍ଷମା ଯୋଗିନଃ ।
ତଦ୍ୟଃ ସ୍ୱଂ ପରମଂ ପଦଂ ସ୍ୱଚରଣପ୍ରେମାଧ୍ୱପାନ୍ଥୈର୍ଜନୈଃ
ସୁପ୍ରାପଂ ବିଦଧାତି ନଃ ସ ଭଗବାନବ୍ୟାଭବବ୍ୟାପଦଃ ।୨୪।

ଯୋଗ ଦ୍ୱାରା ମନ, ପ୍ରାଣ ଓ ଇନ୍ଦ୍ରିୟମାନଙ୍କୁ ଆୟତ୍ତ କରିଥିବା ଯୋଗୀମାନେ କାମ, କ୍ରୋଧ ଓ ମୋହାଦି ଶତ୍ରୁମାନଙ୍କୁ ଜୟକରି ପଞ୍ଚକ୍ଲେଶରୁ ତ ମୁକ୍ତ ହୋଇଯାଆନ୍ତି କିନ୍ତୁ ଏହା ଦ୍ୱାରା ପରମ ପଦକୁ କ୍ଷଣଟିଏ ପାଇଁ ବି ଦେଖିପାରନ୍ତି ନାହିଁ ହେଲେ ତାଙ୍କର ଅହେତୁକୀ କୃପା ଫଳରେ ସାଧାରଣ ଭକ୍ତଟିଏ ତାହା ଅକ୍ଲେଶରେ ପାଇ ପାରେ । ଏହିପରି ଯେଉଁ ଭକ୍ତବନ୍ଧୁ ଜଗନ୍ନାଥ ସେ ସାଂସାରିକ ବିପଦ ଆପଦରୁ ଆମକୁ ରକ୍ଷା କରନ୍ତୁ ।୨୪।

ଯୋଗୀଏ ଯୋଗ ଶକ୍ତି ବଳେ । ଶରୀର ସାଧି ଏ ଶୟଳେ ॥୨୪/୧॥
ଇନ୍ଦ୍ରିୟ ମନ ପ୍ରାଣ ରୋଧି । ଯୋଗରେ ହୃଦୟକୁ ବାନ୍ଧି ॥୨୪/୨॥
କାମ କ୍ରୋଧ ଓ ମଦ ମୋହ । ଲୋଭ ମାତ୍ସର୍ଯ୍ୟ ରିପୁ ଛଅ ॥୨୪/୩॥
ଶରୀର ଶତ୍ରୁ ଜୟକରି । ପଞ୍ଚକ୍ଲେଶରୁ ଯାନ୍ତି ତରି ॥୨୪/୪॥
ଅସ୍ମିତା ଅନୁରାଗ ଦ୍ୱେଷ । ଆଦିଛନ୍ତି ଯେ ପଞ୍ଚକ୍ଲେଶ ॥୨୪/୫॥
ବିଦ୍ୟା ସହ ଅଭିନିବେଶ । କରନ୍ତି ଏ ସବୁରେ ବଶ ॥୨୪/୬॥
ଜୀବନେ କରି ଏତେ କଷ୍ଟ । ନ ହୁଏ ଥରେ ତାଙ୍କ ଭେଟ ॥୨୪/୭॥
ପରମପଦ ନାମେ ଯାହା । ଅଯାଚିତରେ ଦିଏ ତାହା ॥୨୪/୮॥
ନିଜର ଭକତ ଯେତେକ । ତାଙ୍କର ଚରଣ ସେବକ ॥୨୪/୯॥
ପରମହଂସେ ଯା ଅଲଭ୍ୟ । ଭକତରେ ତାହା ସୁଲଭ ॥୨୪/୧୦॥
ତା ଅହେତୁକୀ କୃପାବଳେ । ବସିଛି ଯିଏ ନୀଳାଚଳେ ॥୨୪/୧୧॥
ସଂସାର ଆପଦ ବିପଦୁ । ଉଦ୍ଧାର କରୁ ସେହି ପ୍ରଭୁ ॥୨୪/୧୨॥
ନୀଳକେଶରୀ ଭକ୍ତବନ୍ଧୁ । ଭକତ ପାଇଁ କୃପାସିନ୍ଧୁ ॥୨୪/୧୩॥
ସେହି ଟି ମୋ କାଳିଆ ହାତୀ । ତା ପାଦେ ଜଣାଏଁ ପ୍ରଣତି ॥୨୪/୧୪॥

# ପୀତ ବସନ ବନମାଳୀ:

ନବ୍ୟଭ୍ରଭ୍ରମରପ୍ରଭାକରସୁତାପାଥଃପ୍ରଫୁଲ୍ଲୋତ୍ପଳ-
ପ୍ରାଲେୟାଂଶୁକଳଙ୍କକଜ୍ଜଳମହାନୀଳାଶ୍ମନୀଳୋଜ୍ଜ୍ୱଳଃ ।
ଶଂପାଚଂପକନୀପକୁଙ୍କୁମତମୀଚାମୀକରାଭାସ୍ୱରଃ
କୃଷ୍ଣଃ ସତ୍ସ୍ୱତିଶର୍କରାଧ୍ୱଜନିତାଂ ମୁଷ୍ଣାତୁ ତୃଷ୍ଣାଂ ମମ ।୨୫।

ନୂଆ କଳାହାଣ୍ଡିଆ ମେଘ, ଭ୍ରମର, ଯମୁନା ଜଳ, ଉତ୍ଫୁଲ୍ଲ ନୀଳ କଇଁ, ଚନ୍ଦ୍ରର କୃଷ୍ଣ କଳଙ୍କ, କଜ୍ଜଳ ରାତ୍ରି ଓ ମହାନୀଳମଣି ପରି ଚିକ୍କଣକଳା ହୋଇ ଥିଲେ ହେଁ ବିଜୁଳି, ଚମ୍ପା ଫୁଲ, କଦମ୍ବ ଫୁଲ, କୁଙ୍କୁମ, ହଳଦୀ ଓ ସୁନାର ମିଶ୍ରିତ ବର୍ଣ୍ଣ ପରି ଗାଢ଼ ହଳଦିଆ ଲୁଗା ଯେ ପରିଧାନ କରନ୍ତି, ସେହି ପ୍ରଭୁ ଜଗନ୍ନାଥ ସଂସାର ରୂପକ କଙ୍କରିଳ ପଥରେ ଜନ୍ମିଥିବା ମୋର ତୃଷ୍ଣାକୁ ଖଣ୍ଡନ କରନ୍ତୁ । ।୨୫।

ନବ ନୀରଦ ତନୁ ଯାର । ଲାଗଇ ସତେ କି ଭ୍ରମର ॥୨୫/୧॥
ଯମୁନା ଜଳ ପ୍ରାୟେ କଳା । ନୀଳମଣି ସେ ଚକାଡ଼ୋଳା ॥୨୫/୨॥
ଉତ୍ଫୁଲ୍ଲିତ ନୀଳକଇଁ । ନୀଳ ପରବତ ଗୋସାଇଁ ॥୨୫/୩॥
କଳା କଳଙ୍କେ ଯେହ୍ନେ ଶଶୀ । କଜ୍ଜଳ କଳା ପରି ଦିଶି ॥୨୫/୪॥
ରାତ୍ରିର ଅମା ଅନ୍ଧକାର । ପରାୟେ ଲାଗେ ତନୁ ଯାର ॥୨୫/୫॥
ସେ ପ୍ରଭୁ ପିନ୍ଧି ପୀତବାସ । ଅନୁପମ ଲାଗେ ତା ବେଶ ॥୨୫/୬॥
କଦମ୍ବ ଚମ୍ପା ଓ ବିଜୁଳି । ମିଶି ଦିଶଇ ଯେହ୍ନେ ଝଳି ॥୨୫/୭॥
ହଳଦୀ ସୁନା ଓ କୁଙ୍କୁମ । ତା ସାଥେ ଲାଗେ ଅନୁପମ ॥୨୫/୮॥
ଏସବୁ ରଙ୍ଗ ଏକ ବାସେ । ପ୍ରକୃତି ବଶେ ଯେବେ ମିଶେ ॥୨୫/୯॥
ଲାଗେ ସେପରି ତା ବସନ । ମେଘରେ ବିଜୁଳି ଯେସନ ॥୨୫/୧୦॥
ଏସନ ପରିଧାନ ଯାର । ଭକତ ଜନ ମନ ଚୋର ॥୨୫/୧୧॥
ନୀଳ କନ୍ଦର ତାର ଘର । ସେ ପ୍ରଭୁ କାଳିଆ ଠାକୁର ॥୨୫/୧୨॥
ସଂସାର ପଥେ ତୃଷ୍ଣା ଯେତେ । ନିବାରି ଉଦ୍ଧାରୁ ସେ ମୋତେ ॥୨୫/୧୩॥

## କାଳ ରୂପୀ ଜଗନ୍ନାଥଃ

ତ୍ରୁଟ୍ୟାଦିପ୍ରଳୟାନ୍ତକାଳକଳନାତ୍ ପ୍ରେତେଶିତୁଃ ଶାସନା
ନ୍ନୀଳଦ୍ରବ୍ୟଚୟାଧିକାସିତରୁଚଃ କାଳେସୁଖାଦାନତଃ ।
ନୀଳସ୍ୟାଚଳନାୟକସ୍ୟ ଶିରସୋଽଳଙ୍କାର ଭାବାତ୍ ସ୍ୱତଃ
ସଂପ୍ରୋକ୍ତଃ କିଳକାଳକାଳ ଇତି ଯଃ କୃଷ୍ଣାୟତସ୍ମୈନମଃ ।୨୬।

ତ୍ରୁଟିଠାରୁ ଆରମ୍ଭ କରି ପ୍ରଳୟ ପର୍ଯ୍ୟନ୍ତ ସମୟ ହିସାବ କରୁଥିବାରୁ, ସମସ୍ତ କୃଷ୍ଣ ଦ୍ରବ୍ୟଠାରୁ ଅଧିକ କାଳିଆ ଯମଙ୍କୁ ଶାସନ କରୁଥିବାରୁ, ଯଥାକାଳରେ ସୁଖଭୋଗ କରୁଥିବାରୁ ଏବଂ ନୀଳ ପର୍ବତ ମସ୍ତକରେ ଅଳଙ୍କାର ହୋଇଥିବାରୁ ଯାହାଙ୍କୁ କାଳର କାଳ ବୋଲି କୁହାଯାଏ ସେହି ସମସ୍ତ ସଂସାରର ଆକର୍ଷଣକାରୀ ଜଗନ୍ନାଥଙ୍କୁ ମୁଁ ପ୍ରଣାମ କରୁଛି ।୨୬।

| | | | |
|---|---|---|---|
| ଯେ ପ୍ରଭୁ ତ୍ରୁଟିରୁ ପ୍ରଳୟ | । | ହିସାବ କରଇ ସମୟ | ॥୨୬।୧॥ |
| କାଳର ସ୍ୱରୂପ ଟି ସେହି | । | ତାହାଙ୍କୁ ମହାକାଳ କହି | ॥୨୬।୨॥ |
| କାଳରେ ସର୍ବ ଜନ୍ତୁ ସୃଷ୍ଟି | । | ଅନ୍ତେ କାଳ ଗର୍ଭେ ପଶନ୍ତି | ॥୨୬।୩॥ |
| କଳା ଜିନିଷ ଠାରୁ କଳା | । | ଅଟଇ ଅଧିକ ଯେ କଳା | ॥୨୬।୪॥ |
| ନରକାଧିପତି ଶମନ | । | ତାରେ ଯେ କରଇ ଶାସନ | ॥୨୬।୫॥ |
| ଯଥା କାଳରେ ସୁଖଭୋଗ | । | ଯାହା ଇଚ୍ଛାରେ ଯୋଗାଯୋଗ | ॥୨୬।୬॥ |
| ମସ୍ତକେ ନୀଳ ପରବତ | । | ଅଳଙ୍କାର ରୂପେ ଶୋଭିତ | ॥୨୬।୭॥ |
| କାଳର କାଳ ଯାରେ କହି | । | ଯେ ଜୀବ ଦୁଃଖ ଆକର୍ଷଇ | ॥୨୬।୮॥ |
| ସେ ପ୍ରଭୁ ପାପର ଅଇରି | । | ସକଳ ଜୀବ ଦୁଃଖ ହାରୀ | ॥୨୬।୯॥ |
| ତାହାର କମଳ ଚରଣ | । | ତଳେ ମୁଁ କରୁଛି ପ୍ରଣାମ | ॥୨୬।୧୦॥ |

# ସଂସାର ପାଳକ ଜଗନ୍ନାଥ:

ଆତ୍ମାଦେଶଶ୍ରୁତିସ୍ମୃତ୍ୟୁଦିତବହୁବିଧାଚାରବାରଂ ପ୍ରଜାଭିଃ
କାଳେକାଳେଽନୁତିଷ୍ଠନ୍ ଗଗନଗଗଣିତଂ ସାର୍ଥୟତ୍ୟାତ୍ମଜାଭିଃ ।
ବିଶ୍ୱଂ ଯଃ ପାତି ମାଦୃକ୍ ପତିତତତିସମୁଦ୍ଧାରଣୋନ୍ନଦ୍ଧବାହୁଃ
ସୋଽୟଂ ଦେବଃଶିତିଷ୍ମାଭୃତି ଜୟତିତମାମିନ୍ଦ୍ରନୀଳୋଜ୍ଜ୍ୱଳଶ୍ରୀଃ ।୨୭।

ନିଜର ଆଦେଶଭୁତ ବେଦ ଓ ସ୍ମୃତିରେ ଯେତେ ପ୍ରକାର ବର୍ଣ୍ଣାଶ୍ରମାଚାର ଲେଖାଯାଇଛି, ସେ ସବୁ ନିଜ ପ୍ରଜାଙ୍କ ଦ୍ୱାରା ଯଥା ସମୟରେ ଅନୁଷ୍ଠିତ କରାଇ ଗ୍ରହ ଗଣିତକୁ ଯେ ସାର୍ଥକ କରାଉଛନ୍ତି, ଯେ ଏ ସଚରାଚର ବିଶ୍ୱକୁ ପାଳନ କରୁଛନ୍ତି, ମୋ ପରି ପତିତମାନଙ୍କୁ ରକ୍ଷା କରିବାପାଇଁ ଯେ ଉପରକୁ ହାତ ଟେକି ବସି ରହିଛନ୍ତି ଏବଂ ଯାହାଙ୍କର ଶରୀର କାନ୍ତି ଇନ୍ଦ୍ରନୀଳ ପରି କୃଷ୍ଣ ଓ ଉଜ୍ଜ୍ୱଳ ସେହି ମୋର ହୃଦୟର ଦେବତା ଶ୍ରୀ ଜଗନ୍ନାଥ ନୀଳାଚଳରେ ବରାବର ବିରାଜମାନ କରିଛନ୍ତି ।୨୭।

ସଚରାଚରର ପାଳକ । ଅନନ୍ତ ବିଶ୍ୱର ନାୟକ ॥୨୭/୧॥
ଯାହାର ଆଦେଶରେ ଗ୍ରହ । ଘୂରନ୍ତି ଶୂନ୍ୟେ ଅହରହ ॥୨୭/୨॥
ଦିଅନ୍ତି ଜୀବେ କର୍ମଫଳ । ପାଇଣ ଯେ ପ୍ରଭୁର ବଳ ॥୨୭/୩॥
ବେଦ ସ୍ମୃତି ଆଦି ଯେ ଶାସ୍ତ୍ର । ସ୍ୱାଧ୍ୟାୟେ ମିଳେ ପରମାର୍ଥ ॥୨୭/୪॥
ତା ମଧ୍ୟେ ଯାହାର ବଚନ । ବର୍ଣ୍ଣାଶ୍ରମ ବିଧି ବର୍ଣ୍ଣନ ॥୨୭/୫॥
କରାନ୍ତି ତାରେ ଅନୁଷ୍ଠିତ । ନିଜର ଯେତେକ ଭକତ ॥୨୭/୬॥
ଭକତେ କରି ଅନୁଷ୍ଠାନ । ତୋଷନ୍ତି ନିଜ ପ୍ରଭୁ ମନ ॥୨୭/୭॥
ମନ ବାଞ୍ଛିତ ଫଳ ପାନ୍ତି । ସଂସାରେ ଆନନ୍ଦେ ବଞ୍ଚନ୍ତି ॥୨୭/୮॥
ଯେ ପ୍ରଭୁ ଶରୀରର କାନ୍ତି । ଦର୍ଶନ ଦେବତା ଇଛନ୍ତି ॥୨୭/୯॥
କଳା କଜ୍ଜ୍ୱଳ ପରି ଦିଶେ । ଇନ୍ଦ୍ରନୀଳ ପ୍ରଭା ପ୍ରକାଶେ ॥୨୭/୧୦॥

ବସିଛି ବାହୁକୁ ପ୍ରସାରି । ଶ୍ରୀକ୍ଷେତ୍ରେ ନୀଳାଦ୍ରିବିହାରୀ ।।୨୭/୧୧।।
ମୋ ପରି ପତିତ ଉଦ୍ଧାର । ଏହି ସଂସାରେ କର୍ମ ଯାର ।।୨୭/୧୨।।
ସେହି ମୋ ହୃଦୟ ଦେବତା । ମର୍ତ୍ତ୍ୟମଣ୍ଡଳେ ବଳବନ୍ତା ।।୨୭/୧୩।।
ଭକତ ଜନ ଉଦ୍ଧାରଣେ । ବସିଛି ରତ୍ନ ସିଂହାସନେ ।।୨୭/୧୪।।
ହୃଦୟ ସିଂହାସନ ମୋର । ଅଟଇ ଆସ୍ଥାନ ତାହାର ।।୨୭/୧୫।।
ଚରଣ ଯୁଗଳ ତାହାର । ଶିରରେ ରହିଥାଉ ମୋର ।।୨୭/୧୬।।



## ଭକତର ଶେଷ ଇଚ୍ଛା:

ବେଳୋଦ୍ୟଦସିତଗୋତ୍ରେ
ସୂତ୍ରାମାଦିସ୍ତବାବଳୀପାତ୍ରେ ।
ଗାତ୍ର ମମ ସୁପବିତ୍ରେ
ନିପତତୁ ପୁରୁଷୋତ୍ତମ କ୍ଷେତ୍ରେ ।୨୮।

ପୂର୍ବ ସମୁଦ୍ର ବେଳାଭୂମିରେ ଥିବା ଯେଉଁ ପବିତ୍ର କ୍ଷେତ୍ରରେ ନୀଳପର୍ବତ ଉତ୍ଥିତ ହୋଇଛି, ଇନ୍ଦ୍ର ଆଦି ଦେବତାମାନଙ୍କର ସ୍ତୋତ୍ର ସବୁକୁ ଯେଉଁ କ୍ଷେତ୍ର ପାତ୍ର ସ୍ୱରୂପରେ ଧାରଣ କରିଛି ପୁରୁଷ ଉତ୍ତମ ଶ୍ରୀଜଗନ୍ନାଥ ବିରାଜିତ ସେଇ ପାବନ ପୁରୁଷୋତ୍ତମ କ୍ଷେତ୍ରରେ ମୋର ଶରୀର ଲୀନ ହେଉ ଏହା ମୋର ଇଚ୍ଛା ।।୨୮।

ଯେ କ୍ଷେତ୍ରେ ନୀଳ ପରବତ । ସମୁଦ୍ର କୂଳେ ଉତଥିତ ॥୨୮/୧॥
ଇନ୍ଦ୍ରାଦି ଦେବତାଙ୍କ ସ୍ତୋତ୍ର । ଧରିଛି ଯିଏ ଯେହ୍ନେ ପାତ୍ର ॥୨୮/୨॥
ଯେ ସ୍ଥାନେ ଛନ୍ତି ନୀଳାଦ୍ରୀଶ । ଜଳେ ସ୍ଥଳେ ଅବା ଆକାଶ ॥୨୮/୩॥
ପ୍ରାଣ ଯା ସେ କ୍ଷେତ୍ରେ ଛାଡ଼ଇ । ସେ ଜୀବ ବୈକୁଣ୍ଠେ ବସଇ ॥୨୮/୪॥
ବାନା ତା ପତିତପାବନ । ମୁକତି କରିଲେ ଦର୍ଶନ ॥୨୮/୫॥
ଅତ୍ୟନ୍ତ ପବିତ୍ର ଏ ସ୍ଥାନ । ଯେଣୁ ଅଛନ୍ତି ଭଗବାନ ॥୨୮/୬॥
ମର୍ତ୍ତ୍ୟ ବୈକୁଣ୍ଠ ଯାକୁ କହି । ବିଜେ ଯେହେତୁ ଭାବଗ୍ରାହୀ ॥୨୮/୭॥
ଦାରବ ଶରୀର ଧରିଣ । ଲୀଳା କରନ୍ତି ରାତ୍ର ଦିନ ॥୨୮/୮॥
ସେ ପ୍ରଭୁ ମୋତେ ଦୟା କରୁ । ପଞ୍ଚ ତତ୍ତ୍ୱର ଏ ଶରୀରୁ ॥୨୮/୯॥
ପ୍ରାଣ ମୋ ଛାଡ଼ିବାର ବେଳେ । ଦେଖିବି ନୀଳଚକ୍ର ଡ଼ୋଳେ ॥୨୮/୧୦॥
ଏଇ ସେ କ୍ଷେତ୍ର ପୁରସ୍ତମ । ଯେ କ୍ଷେତ୍ରେ ନ ଆସଇ ଯମ ॥୨୮/୧୧॥
ସେକ୍ଷେତ୍ରେ ମୋର ଯାଉ ପ୍ରାଣ । ମୋତେ ଉଦ୍ଧରୁ ନାରାୟଣ ॥୨୮/୧୨॥

## ଦ୍ୱିତୀୟ ଭାଗ

# ପୁରୁଷୋତ୍ତମ ସ୍ତବ

ଯା ବାଗ୍ ବାଗ୍ ବ୍ରହ୍ମଶର୍ବୈଡ଼ିତଗୁଣବିତତୈଃ ଶ୍ରୀପତେର୍ବର୍ଣ୍ଣନାଢ଼୍ୟା
ସା ସ୍ୟାଦ୍ ବିଶ୍ୱାଶୁଭଘ୍ନୀ ସତତମପି ଯୁତା ବଦ୍ୟବଦ୍ ଗଦ୍ୟପଦ୍ୟୈଃ ।
ଯା ତଦ୍ରିକ୍ତାସୁପୂକ୍ତାପି ଚ ସୁଭଗପଦୈସ୍ତ୍ୟଜ୍ୟତେ ସଦ୍ଭିରେଷା
ତସ୍ମାତ୍ କୃଷ୍ଣାଚଳେ ଶାମଳଗୁଣଜଳଧେର୍ବର୍ଣ୍ଣନୀୟୋଽତ୍ରବିନ୍ଦୁଃ ।୧ ।

ବିଶୁଦ୍ଧ ଗୁଣର ସାଗର ନୀଳାଚଳନାଥ ଶ୍ରୀଜଗନ୍ନାଥ ଯିଏ କି ମାତା ସରସ୍ୱତୀ, ବ୍ରହ୍ମା ଓ ବିଷ୍ଣୁଦ୍ୱାରା ପୂଜିତ, ଯାହାଙ୍କ କଥା ଯେଉଁ ଶାସ୍ତ୍ରରେ ନ ଥାଏ ତାକୁ ଶାସ୍ତ୍ର ବୋଲି ପଣ୍ଡିତ ମାନେ ଗ୍ରହଣ କରନ୍ତି ନାହିଁ, ଯାହାଙ୍କ ସବୁଗୁଣ ବର୍ଣ୍ଣିବା ଅସମ୍ଭବ, ସେହି ପ୍ରଭୁଙ୍କ ସାମ୍ୟକ ବର୍ଣ୍ଣନା ଏଠାରେ କରାଯାଉଛି ।।୧।

କର୍ଣ୍ଣ ଯେ ନ ଶୁଣଇ କେବେ । ନୀଳାଦ୍ରିନାଥ କଥା ତେବେ ॥୧/୧॥
ସେ କର୍ଣ୍ଣ କର୍ଣ୍ଣ ନ ବୋଲାଇ । ତାହାକୁ ସର୍ପ ବିଳ କହି ॥୧/୨॥
ଚକ୍ଷୁ ନ ଦେଖେ ଜଗା ଲୀଳା । ତାହାକୁ କହି କାଚଗୋଳା ॥୧/୩॥
ହାତ ନ କଲେ ପ୍ରଭୁ କର୍ମ । ବ୍ୟର୍ଥ ତା ହୁଏ ପରଜନ୍ମ ॥୧/୪॥
ଚତୁଷ୍ପଦ ଗରଭେ ଶୁଏ । ହାତ ନ ଥାଇ ଜନ୍ମ ନିଏ ॥୧/୫॥
ଗଦ୍ୟ ପଦ୍ୟ ଓ ନବରସ । ଭରି ରହିଲେ ଲାଭ କିସ ॥୧/୬॥
ଯେ ଶାସ୍ତ୍ରେ ନାହିଁ ପ୍ରଭୁ କଥା । ସଂସାରେ ତାର ସୃଷ୍ଟି ବୃଥା ॥୧/୭॥
ଜଗନ୍ନାଥ ଗୁଣ ସାଗର । ପୂଜନ୍ତି ଯାହାଙ୍କୁ ଶଙ୍କର ॥୧/୮॥
ଚାରି ମୁଖରେ ବ୍ରହ୍ମଦେବ । କରୁଥାନ୍ତି ଯାହାର ସ୍ତବ ॥୧/୯॥
ବୀଣା ବଜାଇ ସରସ୍ୱତୀ । କରନ୍ତି ଗୁଣ ଗାଇ ସ୍ତୁତି ॥୧/୧୦॥
ଯାରେ ଝୁରଇ ଭକ୍ତଜନ । ସିଏ ମୋ ଜୀବନର ଧନ ॥୧/୧୧॥
ସେ ପ୍ରଭୁ ଗୁଣ କିଏ କହି । ଗୁଣ ସାଗର ଭାବଗ୍ରାହୀ ॥୧/୧୨॥
ଜଗନ୍ନାଥଙ୍କ ଯେତେ ଗୁଣ । ସମ୍ଭବ ନୁହଁଇ ବର୍ଣ୍ଣନ ॥୧/୧୩॥
ଏ ଶାସ୍ତ୍ରେ ଠିକେ ଅଳପରେ । ତା ଗୁଣ ତାହାର ଦୟାରେ ॥୧/୧୪॥
କରୁଛି ଏଠାରେ କୀର୍ତ୍ତନ । ଯେହ୍ନେ ସନ୍ତୋଷ ଭଗବାନ ॥୧/୧୫॥
ତା ଦୟା ମୋ ଉପରେ ଥାଉ । ତା ଗୁଣ ଗାଇ ଜୀବ ଯାଉ ॥୧/୧୬॥

ଯତ୍ର କ୍ଷେତ୍ରଂ ପବିତ୍ରଂ ବିଳସତି ସିତଗୁଞ୍ଜିତ୍ରନେତ୍ରସ୍ୟ ଗାତ୍ରଂ
ଗୋତ୍ରା ଯତ୍ରାତିମାତ୍ରାସ୍ତଦବୟବସ୍ତୃତା ଦୀପବତ୍ୟୋ ବିଚିତ୍ରାଃ ।
ସ୍ୱସ୍ଥାନସ୍ଥାଃ ପଦସ୍ଥାପିତନିଜଜନତା ଦେବତାଃ ସନ୍ତି ନିତ୍ୟା
ମର୍ତ୍ତ୍ୟାଃ ସ୍ମାର୍ତ୍ତାଃ ସ୍ମରାର୍ତ୍ତା ହରିଚରଣରତାଷ୍ଟେତ୍କଳ ସ୍ୟାତ୍ କଳିଘ୍ନଃ ।୨।

ଯେଉଁ ଦେଶରେ ପବିତ୍ର ପୁରୁଷୋତ୍ତମ କ୍ଷେତ୍ରରେ ପ୍ରଭୁ ଜଗନ୍ନାଥ ସ୍ୱଦେହରେ ବିରାଜମାନ, ଯେଉଁ ଦେଶରେ ଅବୟବ ରୂପେ ଅନେକ ଉଚ୍ଚ ପର୍ବତ ରହିଛନ୍ତି, ଯେଉଁ ଦେଶର ମନ୍ଦିରମାନଙ୍କରେ ଦିନରାତି ଦୀପ ଜଳୁଥାଏ, ଯେଉଁ ଦେଶରେ ଦେବତାମାନେ ସ୍ୱ ସ୍ୱ ମନ୍ଦିରମାନଙ୍କରେ ଅବସ୍ଥାନ କରି ନିଜର ଭକ୍ତମାନଙ୍କୁ ଉଚ୍ଚାସନରେ ଆସୀନ କରୁଅଛନ୍ତି, ଯେଉଁ ଦେଶର ଲୋକମାନେ ପଞ୍ଚଦେବତା ଉପାସନା ପୂର୍ବକ ପ୍ରଭୁ ନାମ ସ୍ମରଣରେ ସର୍ବଦା ଲୀନ ଏବଂ ଶ୍ରୀହରି ସେବା ତତ୍ପର, ଏହି ସେହି ପବିତ୍ର ଭୂମି ଉତ୍କଳ ଦେଶ କଳିଯୁଗର ଆପଦ ବିପଦ ନାଶ କରୁ ।।୨।

| | | |
|---|---|---|
| ଜଗତ ନାଥ ଯେଉଁ ଦେଶେ । | ଦାରବ ତନୁରେ ପ୍ରକାଶେ | ॥୨/୧॥ |
| ଯେ ଦେଶେ ରହିଛି ଶ୍ରୀକ୍ଷେତ୍ର । | ମର୍ତ୍ତ୍ୟ ବୈକୁଣ୍ଠ ଯେ ପବିତ୍ର | ॥୨/୨॥ |
| ଅବୟବ ରୂପେ ଯାହାର । | ଶୋଭନ୍ତି ପର୍ବତ ଶିଖର | ॥୨/୩॥ |
| ଯେବଣ ଦେଶର ଦେଉଳେ । | ନିଶି ଦିବସ ଦୀପ ଜଳେ | ॥୨/୪॥ |
| ଦେବତା ଥାଇଣ ମନ୍ଦିରେ । | ଅଯାଚିତେ ଦିଏ ଭକ୍ତରେ | ॥୨/୫॥ |
| ଯେ ଯାହା ମାଗେ ତତ୍‌କ୍ଷଣେ । | ସ୍ଥାପନ୍ତି ନେଇ ଉଚ୍ଚାସନେ | ॥୨/୬॥ |
| ଯେ ଦେଶେ ଜନ ସାଧାରଣ । | କରି ପଞ୍ଚଦେବ ପୂଜନ | ॥୨/୭॥ |
| ସ୍ମାର୍ତ୍ତ ମତ ଘେନି ଚଳନ୍ତି । | ସର୍ବଦା ନାମକୁ ଘୋଷନ୍ତି | ॥୨/୮॥ |
| ପ୍ରଭୁର ଶ୍ରୀଚରଣ ସେବା । | କରୁଥାଆନ୍ତି ରାତ୍ର ଦିବା | ॥୨/୯॥ |
| ଧନ୍ୟ ସେହି ଉତ୍କଳ ଦେଶ । | ଯା ରାଜା ସ୍ୱୟଂ ନୀଳାଦ୍ରୀଶ | ॥୨/୧୦॥ |
| ସେ ଦେଶ ମାତାର ଚରଣ । | ବନ୍ଦଇ ମୁହିଁ ପୁନଃ ପୁନ | ॥୨/୧୧॥ |

ସ୍ତବ୍ୟା ଭବ୍ୟା ଅଭବ୍ୟା ଅପି ବଚନଚୟୈର୍ନବ୍ୟନବ୍ୟୈଷ୍ଟ ଦିବ୍ୟୈ-
ର୍ବାସ୍ତବ୍ୟା ଯତ୍ ପୃଥିବ୍ୟାମବନତବଦନୈର୍ବ୍ୟୋମ୍ନି ବିର୍ବର୍ଣ୍ଣ୍ୟମାନାଃ ।
ମାହୁବ୍ୟୂହାଗ୍ରବିଭ୍ରାଜିତବୃଜଗଦାକମ୍ବୁଚକ୍ରା ଇବୋଛେ-
ରୋଡ୍ରଃ ପ୍ରୌଢ଼-ପ୍ରଭାବୋ ଜୟତି ପରିବୃଢ଼ଃ ସର୍ବଦେଶସ୍ୟ ସୋଽୟଂ ॥୩॥

ଯେଉଁ ଭୂମିରେ ବାସ କରୁଥିବା ଲୋକମାନେ ଅଯୋଗ୍ୟ ହେଲେମଧ୍ୟ ହାତରେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଧାରଣ କରିଥିବା ଅବର୍ଣ୍ଣନୀୟ ବିଷ୍ଣୁ ଲୋକଙ୍କ ପରି ଦିଶନ୍ତି ଯାହା ଫଳରେ ଦେବତାମାନେ ଆକାଶରେ ଅବନତ ବଦନ ହୋଇ ଉନ୍ନତ ଓ ନୂତନ ବାକ୍ୟାବଳୀରେ ସ୍ତୁତି କରି ସେମାନଙ୍କୁ ଯୋଗ୍ୟବୋଲି ପ୍ରମାଣିତ କରନ୍ତି, ଏହି ସେହି ଓଡ୍ର ଦେଶ ଯାହାର ପ୍ରଭାବ ଅତି ପ୍ରାଚୀନ ଓ ଏ ଦେଶ ଅନ୍ୟ ଦେଶମାନଙ୍କର ଅଧିପତି ଭାବରେ ଶ୍ରେଷ୍ଠ ହୋଇ ବରାବର ରହିଛି । ।୩।

ଜନଗଣ ଯେଉଁ ଦେଶର । ଲାଗନ୍ତି ଯଦିଚ ଇତର ॥୩/୧॥
ତଥାପି ସେହି ଦେଶ ବାସୀ । ଲାଗନ୍ତି ବଇକୁଣ୍ଠ ବାସୀ ॥୩/୨॥
ଗଦା ପଦ୍ମ ଶଙ୍ଖ ଚକର । ରହିଛି ହାତେ ତାହାଙ୍କର ॥୩/୩॥
ବିଷ୍ଣୁଙ୍କ ପରି ଦେଖାଯାନ୍ତି । ଯେଣୁ ମର୍ତ୍ତ ବୈକୁଣ୍ଠେ ଛନ୍ତି ॥୩/୪॥
ଏ ଦେଶେ ଜନ୍ମ ନେବା ପାଇଁ । ଦେବତା ସଭିଏଁ ଇଛଇ ॥୩/୫॥
ଆକାଶେ ଅଧୋମୁଖହୋଇ । ବିଭିନ୍ନ ସ୍ତୁତି ଗାଇ ଗାଇ ॥୩/୬॥
କରନ୍ତି ଏ କଥା ପ୍ରମାଣ । ଏ ଦେଶବାସୀ ଯୋଗ୍ୟ ପୁଣ ॥୩/୭॥
ଉଡ୍ର ଅଟେ ଏ ଦେଶ ନାମ । ପ୍ରାଚୀନ କାଳୁ ଯା ସୁନାମ ॥୩/୮॥
ଏଇ ଦେଶ ପ୍ରାଚୀନ ଅତି । ଅନେକ ଦେଶ ଅଧିପତି ॥୩/୯॥
ସୁଖ୍ୟାତି ସଂସାରେ ଏହାର । ରହିଛି ଅଜର ଅମର ॥୩/୧୦॥
ପୂର୍ବ ଜନ୍ମରେ ଏହି ଜନ । ଅରଜି ଥିଲେ କେତେ ପୁଣ୍ୟ ॥୩/୧୧॥
ସାଲୋକ୍ୟ ନାମେ ଯେଉଁ ମୁକ୍ତି । ଭକତେ ମୃତ୍ୟୁରେ ଲଭନ୍ତି ॥୩/୧୨॥
ଏଦେଶ ଏତେ ପୁଣ୍ୟ ସ୍ଥଳ । ଜୀବନ ଥାଉଣୁ ସକଳ ॥୩/୧୨॥
ଅଛନ୍ତି ଜଗନ୍ନାଥ ସହ । ଦେଖନ୍ତି ପୂଜନ୍ତି ପ୍ରତ୍ୟହ ॥୩/୧୩॥
ଧନ୍ୟ ଧନ୍ୟ ସେ ଉଡ୍ର ଦେଶ । ମର୍ତ୍ତ୍ୟେ ନାହିଁ ଯା ସମ ଦେଶ ॥୩/୧୪॥
ସେ ଯେ ମୋର ଜନମ ଭୂଇଁ । ଜନ୍ମି ତା କୋଳେ ଧନ୍ୟ ମୁହିଁ ॥୩/୧୫॥

ନାନୋଦ୍ୟାନୋଦ୍ୟତାନୋକହବହଳଦଳଚ୍ଛାୟଶାନ୍ତାତପାର୍ତ୍ତି-
ର୍ନିତ୍ୟପ୍ରତ୍ୟଗ୍ରସୌଧାବଳିଦଳିତକଳାନାଥଭୃତ୍‌ଶୈଳକାନ୍ତିଃ ।
ଅଶ୍ରାନ୍ତଭ୍ରାନ୍ତବାତପ୍ରମଥିତପଥିକଶ୍ରାନ୍ତିରକ୍ଷେମଶାନ୍ତିଂ
କୁର୍ଯ୍ୟାତ୍‌ପର୍ଯ୍ୟନ୍ତଗର୍ଜଜ୍ଜଳଧିରଧିରୁଚିଃ କମ୍ବୁଭାଃକାପିପୂର୍ଣ୍ଣଃ ।୪।

ଅସଂଖ୍ୟ ଉଦ୍ୟାନ ଓ ତହିଁରେ ଥିବା ବୃକ୍ଷସମୂହର ଘଞ୍ଚପତ୍ରଛାୟାରେ ଯେଉଁ କ୍ଷେତ୍ର ସୂର୍ଯ୍ୟ ଆତପ ଜନିତ ପୀଡ଼ାକୁ ଶାନ୍ତ କରେ, ଯାହାର ନିତ୍ୟ ନୂତନ ସୌଧାବଳୀ କୈଳାସ ପର୍ବତର ଶୋଭାକୁ ନ୍ୟୁନ କରିଦିଏ, ଯାହାର ଅନବରତ ବାୟୁ ପ୍ରବାହ ପଥିକମାନଙ୍କ କ୍ଲାନ୍ତି ଅପନୋଦନ କରେ, ଯାହାର ଗୋଟିଏ ପ୍ରାନ୍ତରେ ଶବ୍ଦାୟମାନ ସମୁଦ୍ର ରହିଅଛି, ଶଙ୍ଖର ଦୀପ୍ତିପରି ଯାହାର ଦୀପ୍ତି ଏବଂ ଯେଉଁ କ୍ଷେତ୍ର ଅତ୍ୟନ୍ତ ଶୋଭାଶାଳିନୀ ସେହି ଅନିର୍ବଚନୀୟ ପୁରୁଷୋତ୍ତମ କ୍ଷେତ୍ର ଆମ୍ଭମାନଙ୍କର ଶାନ୍ତି ବିଧାନ କରୁ । ।୪।

ଶ୍ରୀପୁରୁଷୋତ୍ତମ ସେ କ୍ଷେତ୍ର । ଯହିଁ ସଉଧାବଳୀ ନିତ୍ୟ ।।୪/୧।।
ନୂତନ ରୂପ ଧରି ଦିଶେ । କୈଳାସ ଶୋଭାକୁ ନିରାଶେ ।।୪/୨।।
ଅସଂଖ୍ୟ ଉଦ୍ୟାନରେ ଭରା । ବୃକ୍ଷ ଛାୟା ନିବାରେ ଖରା ।।୪/୩।।
ସୂର୍ଯ୍ୟର ଆତପ ଜନିତ । ପୀଡ଼ାକୁ କରେ ପ୍ରଶମିତ ।।୪/୪।।
ପୂର୍ବରେ ନୀଳ ପାରାବାର । ଶବଦ ପାପ କରେ ଦୂର ।।୪/୫।।
ଶଙ୍ଖ ପରାୟେ ତାର ଦୀପ୍ତି । ସାରା ସଂସାରେ ଯାର ବ୍ୟାପ୍ତି ।।୪/୬।।
ବହିଣ ମନ୍ଦ ସମୀରଣ । ପଥି କ୍ଲାନ୍ତି ଅପନୋଦନ ।।୪/୭।।
ଶାନ୍ତି ମନରେ ତାର ଭରେ । ଆକର୍ଷେ ଭକତ ଜନରେ ।।୪/୮।।
ଅନିର୍ବଚନୀୟ ତା' ଶୋଭା । ନୀଳାଦ୍ରିନାଥ ଯହିଁ ଉଭା ।।୪/୯।।
ପତିତପାବନୀ ସେ ସ୍ଥାନ । ନିରିବାଣ ଶାନ୍ତି ବିଧାନ ।।୪/୧୦।।
କରୁ ସିଏ ଆମରି ପାଇଁ । ଯହିଁ ବିଜେ ଜଗତ ସାଇଁ ।।୪/୧୧।।

ଯତ୍ରାମର୍ତ୍ତ୍ୟାଃ ପରତ୍ରାକୃତସୁକୃତଜନତ୍ରାସିନୋଽପ୍ୟେତମର୍ତ୍ତ୍ୟାନ୍
ବିତ୍ରସ୍ତା ବେତ୍ରହସ୍ତା ନନୁବିନୁତିକୃତଃ ପ୍ରେକ୍ଷ୍ୟସଖ୍ୟେଚ୍ଛବଃ ସ୍ୟୁଃ ।
ଦେବା ଦେବାଧିଦେବାନନନଳିନଦୃଶଃ ସନ୍ତିନାନାତ୍ମଭାଜଃ
କୁର୍ଯ୍ୟାତ୍ ପର୍ଯ୍ୟାପ୍ତବୀର୍ଯ୍ୟା ଶମନିଶମସିତା ହାର୍ଯ୍ୟଧୂର୍ଯ୍ୟା ପୁରୀନଃ ।୫।

ଯେଉଁଠାରେ ଦେବତାମାନେ ପୂର୍ବ ଜନ୍ମରେ ଅକର୍ମ କରିଥିବାରୁ ଭୟରେ ବେତବାଡ଼ି ଧରିଥିଲେ ହେଁ ଶ୍ରୀମନ୍ଦିରରେ ସ୍ତୁତିପାଠରତ ମନୁଷ୍ୟମାନଙ୍କୁ ଦେଖି ସେମାନଙ୍କର ମୈତ୍ରୀ ଇଚ୍ଛା କରନ୍ତି, ଯେଉଁଠାରେ ପୁଣି ଏହି ଦେବଲୋକେ ନାନା ରୂପରେ ବାସକରି ଦେବାଧିଦେବ ଜଗନ୍ନାଥଙ୍କର କମଳନୟନକୁ ଚାହିଁ ରହିଛନ୍ତି, ଯାହାର ଶକ୍ତି ଅତି ବେଶି ଏବଂ ଯେ ନୀଳଗିରିର ଭାର ବହିବାରେ ସମର୍ଥ, ସେହି ପୁରୁଷୋତ୍ତମ କ୍ଷେତ୍ର ପୁରୀ ଆମ୍ଭମାନଙ୍କର କଲ୍ୟାଣ ଓ ମଙ୍ଗଳବିଧାନ କରୁ । ।୫।

ପୂରୁବ ଜନ୍ମ କର୍ମଫଳେ । ଦେବେ ଜନମି ନୀଳାଚଳେ ।।୫/ ୧।।
ହାତରେ ଧରି ବେତବାଡ଼ି । ଜଗି ରୁହନ୍ତି ଭକ୍ତଧାଡ଼ି ।।୫/ ୨।।
ଭକତ ସ୍ତୁତି ପାଠରତ । ଦେଖି ବଢ଼ାନ୍ତି ମୈତ୍ରୀ ହାତ ।।୫/ ୩।।
ବିଭିନ୍ନ ରୂପେ ନେଇ ଜନ୍ମ । ଜଗନ୍ନାଥ ଚକାନୟନ ।।୫/ ୪।।
ଆତୁରେ ରହିଛନ୍ତି ଚାହିଁ । ପରମ ଶାନ୍ତି ମାନ ବହି ।।୫/ ୫।।
ପୁରୁଷୋତ୍ତମ ବଳିୟାର । ନୀଳାଦ୍ରିର ଯେ ବହେ ଭାର ।।୫/ ୬।।
ଯାହାର କୋଳେ ନୀଳାଦ୍ରୀଶ । ଭକତ ତାରଣେ ପ୍ରକାଶ ।।୫/ ୭।।
ସେହି ପୁରୁଷୋତ୍ତମ ପୁରୀ । ସୁକଲ୍ୟାଣ ମଙ୍ଗଳକାରୀ ।।୫/ ୮।।
ଆମର ଆଚରୁ ମଙ୍ଗଳ । ନମଇଁ ମୁଁ ତା ପାଦତଳ ।।୫/ ୯।।

ଅନ୍ତର୍ବେଦୀ ତ୍ରିବେଦୀନିଗଦିତମହିମାଧିତ୍ୟକା ନିତ୍ୟକାନ୍ତା
ସ୍ତୁଙ୍ଗାଃ ଶୃଙ୍ଗାଣି ଯସ୍ୟାମରନିକରଗୃହାଃ ପାବନୀଯଦ୍ଦନୀଶ୍ରୀଃ ।
ପ୍ରାକାରୋ ଯତ୍ ପ୍ରପାତଃ ପ୍ରମଥପତିନୁତୋପତ୍ୟ କାପୂର୍ଯଦୀୟା
ସ ଶ୍ରୀଶାମ୍ଭୋଦଭାରୀ ବିତରତୁ ଜଗତାଂ ମେଚକାଦ୍ରିଃ ।୬।

ଯେଉଁ ଅନ୍ତର୍ଯ୍ୟାମୀ ନାଥଙ୍କର ମହିମା ୩ଟି ଯାକ ବେଦରେ ଉଚ୍ଚ ପ୍ରଶଂସିତ, ଯାହାର ଉନ୍ନତ ଅଧିତ୍ୟକା ଗୁଡ଼ିକ ଚିର ରମଣୀୟ, ଯାହାର ଶୃଙ୍ଗ ଗୁଡ଼ିକରେ ଦେବତାମାନେ ଘର କରି ରହିଛନ୍ତି, ଯାହାର ବନ ସମୂହର ଶୋଭା ପବିତ୍ରକାରିଣୀ, ଯାହାର ପ୍ରଚୀର ଅତଟ ପର୍ବତ ରୂପରେ ବିରାଜମାନ, ଯାହାର ତଟଭୂମିକୁ ଶିବ ସର୍ବଦା ସ୍ତୁତି କରୁଛନ୍ତି ଏବଂ ଯାହାର ନଗରୀ ଜଗନ୍ନାଥ ରୂପକ ବର୍ଷୁକ ମେଘଭାରାରେ ଭାରାକ୍ରାନ୍ତ ସେହି ନୀଳଗିରି ମୋର ସୁଖ ବିଧାନ କରନ୍ତୁ । ।୬।

ଧନ୍ୟ ସେ ଗିରି ନୀଳଶୈଳ । ଅନ୍ତର୍ବେଦୀ ବିଜେ ଯା କୋଳ ।।୬/୧।।
ଯା ଅଙ୍କେ ନୀଳାଦ୍ରି ବିହାରୀ । ଭକ୍ତ ଉଦ୍ଧାରଣେ ବିହରି ।।୬/୨।।
ଯାହାର ପ୍ରଶଂସା ତ୍ରିବେଦେ । ମିଳେ ସର୍ବତ୍ର ଅପ୍ରମାଦେ ।।୬/୩।।
ଅନ୍ତରଯାମୀ ଯେଉଁ ନାଥ । ନାମ ଯାହାର ଜଗନ୍ନାଥ ।।୬/୪।।
ବର୍ଷୁକ ମେଘ ପରି ଶୋଭା । ଦିଶନ୍ତି ଯିଏ ମନ ଲୋଭା ।।୬/୫।।
ଯେ ତା'ର ଭାରେ ଭାରାକ୍ରାନ୍ତ । ନୀଳଗିରି ସେ ପରବତ ।।୬/୬।।
ଉନ୍ନତ ଉପତ୍ୟକା ତା'ର । ରମଣୀୟ ଚିର ସୁନ୍ଦର ।।୬/୭।।
ଶୃଙ୍ଗ ରହିଛି ଯେତେ ତା'ର । ଦେବେ ବସନ୍ତି ତା ଉପର ।।୬/୮।।
ତା' ବନ ସମୂହର ଶୋଭା । ପବିତ୍ର କାରିଣୀ ତା ଆଭା ।।୬/୯।।
ଯା'ର ମେଘନାଦ ପାଚେରି । ଲାଗେ ଯେହ୍ନେ ଅତଟ ଗିରି ।।୬/୧୦।।
ତଟଭୂମିକୁ ଯା'ର ଶିବ । ସାନନ୍ଦେ କରୁଥାନ୍ତି ସ୍ତବ ।।୬/୧୧।।
ଯା' ବିଖ୍ୟାତ ନଗରୀ ପୁରୀ । କୋଳରେ ଧରି ନୀଳଗିରି ।।୬/୧୨।।
ବର୍ଷଣମୁଖୀ ଘନ ଘନ । ରୂପକ ସେ କଳା ନୟନ ।।୬/୧୩।।
ନୀଳଗିରି ଦୟା ସାଗର । କରନ୍ତୁ ମଙ୍ଗଳ ଆମର ।।୬/୧୪।।
କରନ୍ତୁ ସେ ସୁଖ ବିଧାନ । ମୋ ପ୍ରଭୁ ପତିତ ପାବନ ।।୬/୧୫।।

ତୁଙ୍ଗପ୍ରାସାଦଶୃଙ୍ଗପ୍ରତିଲବପବନାନ୍ଦୋଳିତା ବୈଜୟନ୍ତୀ
ବାଞ୍ଛାକଳ୍ପଦ୍ରୁତୀର୍ଥେଶ୍ୱରଶିରସି ଚରତ୍ ପଲ୍ଲବଶ୍ରୀ ଜୟନ୍ତୀ ।
ଯାମ୍ୟସ୍ୱାମ୍ୟାତିତାମ୍ୟଜ୍ଜନବୃଜିନଚମୂ ମୂର୍ଜିତାଂ ତର୍ଜୟନ୍ତୀ
ପାୟାନ୍ନାୟାଭବାଧ୍ୱଶ୍ରମମିବ ଶମିନାଂ ବୀଜନୈର୍ମାଜୟନ୍ତୀ ।୭।

ପ୍ରଭୁ ଜଗନ୍ନାଥଙ୍କ ଉତ୍ତୁଙ୍ଗ ମନ୍ଦିର ଚୂଳରେ ଯେଉଁଠି କେବେ ହେଲେ ପବନର ଅଭାବ ନାହିଁ, ପ୍ରତି ମୁହୂର୍ତ୍ତରେ ବୈଜୟନ୍ତୀପତାକା ଫରଫର ହୋଇ ଉଡୁଅଛି, ଯାହାକି ଏ ତୀର୍ଥେଶ୍ୱରର ବାଞ୍ଛା କଳ୍ପଦ୍ରୁମ ମାଥା ଉପରେ ହଲଚଲ ହେଉଥିବା ବଟପତ୍ରର ଶୋଭାକୁ ପରାଜିତ କରୁଅଛି, ଯେଉଁ ପତାକା ଯମରାଜାଙ୍କଦ୍ୱାରା ଅତିମାତ୍ରାରେ ପୀଡ଼ିତ ହୋଇଥିବା ଲୋକଙ୍କର ପରାକ୍ରାନ୍ତ ପାପରୂପକ ସେନାବାହିନୀକୁ ଭୟ ପ୍ରଦାନ କରୁଅଛି ଏବଂ ପଙ୍ଖା ଶ୍ରାନ୍ତ ଚିତ୍ତମାନଙ୍କର ଶ୍ରମ ଅପନୋଦନ କଲାପରି ସେହି ପତାକା ଏହି ମାୟା ସଂସାର ପଥରେ କ୍ଲାନ୍ତ ଆମ୍ଭମାନଙ୍କର ପଥଶ୍ରମ ଅପନୋଦନ ପୂର୍ବକ ରକ୍ଷାକରୁ । ।୭।

ପତାକା ପତିତପାବନ । ଶିରି ମନ୍ଦିର ଶୋଭାବନ ।।୭/ ୧।।
ଉଡ଼ଇ ସିଏ ଫରଫର । ଶିଖରେ ଉତ୍ତୁଙ୍ଗ ମନ୍ଦିର ।।୭/ ୨।।
ତୀର୍ଥେ ଯେ ବାଞ୍ଛା କଳ୍ପଦ୍ରୁମ । ରହିଛି ଶ୍ରୀପୁରୁଷୋତ୍ତମ ।।୭/ ୩।।
ପତର ତାହାରିଶିରରେ । ହଲଇ ପବନେ ସଧୀରେ ।।୭/ ୪।।
ଶୋଭାକୁ ତାର ପରାଜିତ । କରେ ପାପ ନାଶିନୀ କେତ ।।୭/ ୫।।
ପାପୀଙ୍କ ପାପେ ପରାଭୂତ । କରଇ ସେ ପ୍ରସିଦ୍ଧ କେତ ।।୭/ ୬।।
ଯେ କେତ ଦେଖି ଯମଦୂତ । ହୋଇଣ ଯାଆନ୍ତି ମୂର୍ଚ୍ଛିତ ।।୭/ ୭।।
ଯେତେ ଦୂରକୁ ଦେଖାଯାଏ । ଯମ ସେଠୁ ଛାଡ଼ି ପଳାଏ ।।୭/ ୮।।
ଯମର ଦଣ୍ଡରେ ପୀଡ଼ିତ । ସଂସାରେ ଯେତେକ ଭକତ ।।୭/ ୯।।
ପତାକା ସେ ପାପ ନାଶିନୀ । ପାପରୂପୀ ସେନାବାହିନୀ ।।୭/ ୧୦।।
ତାହାକୁ ଦେଖି ଭୟ ପାଇ । ଭକତ ପାଶେ ନ ପଶଇ ।।୭/ ୧୧।।
ପଥିମାନଙ୍କ ପଥ ଶ୍ରମ । ପଙ୍ଖା କରଇ ଉପଶମ ।।୭/ ୧୨।।
ସେହିପ୍ରକାରେ ଏହି କେତ । ମାୟା ସଂସାର ପଥେ କ୍ଲାନ୍ତ ।।୭/ ୧୩।।
ପଥଶ୍ରମ କାରଣୁ ଯେତେ । ଅବଶ ବିବଶ ଭକତେ ।।୭/ ୧୪।।
ରଖୁ ସବୁରେ ଦେଇ ଶାନ୍ତି । ତା ପାଦେ ଜଣାଏ ପ୍ରଣତି ।।୭/ ୧୫।।

ଶୌଣ୍ଡାନାଂ ଦଣ୍ଡପାଣେରପି ଚରଣଜୁଷାଂ ଦଣ୍ଡଦଃ କେତୁଦଣ୍ଡ-
ଷଣ୍ଡାଳସ୍ୟୋର୍ଦ୍ଧ୍ୱଗତ୍ୟା ଅପି କିମୁ ବିଦଳଚ୍ଚଣ୍ଡମାର୍ତ୍ତଣ୍ଡବିମ୍ବଃ ।
ଚଞ୍ଚଚ୍ଚଞ୍ଚତ୍ ପତାକାଶୟବିଧୁତିମିଷାଦାହୁରାହୂତଲୋକଃ
ପ୍ରାସାଦସ୍ୟେବ ଦୂରାଦପନୟତୁ ଭୟଂ ପଙ୍କତଃ କିଂକରାଣାମ୍ ।୮।

ଯମଙ୍କର ପଦ ସେବକ ଅତିପ୍ରଚଣ୍ଡ ଯମଦୂତମାନଙ୍କର ଯେ ଦଣ୍ଡଦାତା, ପତାକାର ଊର୍ଦ୍ଧ୍ୱଗତିଦ୍ୱାରା ପ୍ରଖର ସୂର୍ଯ୍ୟ ଉତ୍ତାପକୁ ଯେ ପରାଜିତ କରୁଛି, ଅତି ରମଣୀୟ ଭାବରେ ହଲି ହଲି ହାତଠାରି ଯେ ଲୋକମାନଙ୍କୁ ଦୂରରୁ ଡାକୁଅଛି, ପତିତପାବନବାନାକୁ ଧାରଣ କରିଥିବା ସେ ପତାକା ଦଣ୍ଡ ଆମ୍ଭମାନଙ୍କର ପାପ ଜନିତ ଭୟକୁ ନାଶ କରୁ ।।୮।

ଶମନର ପଦସେବକ । ଭୟଙ୍କର ରୂପୀ ଯେତେକ ।।୮/୧।।
ତାଙ୍କର ଯିଏ ଦଣ୍ଡ ଦାତା । ଧାରଣ କରିଛି ପତାକା ।।୮/୨।।
ଯା'ନାମ ପତିତପାବନ । ନୀଳଚକ୍ରରେ ଯା' ଆସନ ।।୮/୩।।
ଧ୍ୱଜାର ଊର୍ଦ୍ଧ୍ୱଗତି ହେଲେ । ପ୍ରଖର ସୂର୍ଯ୍ୟ ତାପ ତୁଲେ ।।୮/୪।।
ବିଜୟ କେତନ ଉଡ଼ାଇ । ଜଗତ ମନ ଯେ ମୋହଇ ।।୮/୫।।
ଅତ୍ୟନ୍ତ ରମଣୀୟ ଭାବେ । ହଲି ହଲି କି ଜଗା ଭାବେ ।।୮/୬।।
ଦୂରରୁ ଡ଼ାକେ ହାତ ଠାରି । ଆସ ହେ ଭକ୍ତ ନରନାରୀ ।।୮/୭।।
ଶ୍ରୀମନ୍ଦିରର ଭୁଜ ଯିଏ । ପ୍ରଭୁର ବଳେ ବଳୀ ସିଏ ।।୮/୮।।
ଅକିଞ୍ଚନ ଓ ସେବାକାରୀ । ଛନ୍ତି ଯେତେ ଆମରି ପରି ।।୮/୯।।
ସେ ପତାକା ଦଣ୍ଡ ଆମର । କରନ୍ତୁ ପାପ ଭୟ ଦୂର ।।୮/୧୦।।



ଚକ୍ରଂ ତନ୍ନକ୍ର ଶକ୍ର କ୍ରକଚକଟୁତନୁ କ୍ରାନ୍ତ୍ୟ-ବିକ୍ରାନ୍ତିଦନ୍ତି-
କ୍ଲାନ୍ତିପ୍ରାନ୍ତାତିଶାନ୍ତାଜିତମହିତମହଃ ସଂହରେଦଂହସାଂନଃ ।
ସଂଙ୍ଘଂ ସଂଘାତପାତାଦବିତୁମବିକଳଂ ହନ୍ତ ପାତିତ୍ୟଭରଜୋ-
ଭ୍ରାଜତ୍ ପ୍ରାସାଦରାଜୋପରିପତିତଦୃଶଃ ଶ୍ରୀଶତୂର୍ଯାଂଶରୂପମ୍ ।୯।

ମନ୍ଦିର ଉପରେ ଦେଦୀପ୍ୟମାନ ଚକ୍ରଟି ଆମ୍ଭମାନଙ୍କର ପାପ ସମୂହ ନାଶ କରୁ । ଏହି ଚକ୍ର ଲକ୍ଷ୍ମୀପତିଙ୍କର ଚତୁର୍ଦ୍ଧାରୂପ । ସେ କରତ ପରି କୁମ୍ଭୀରରାଜର ତୀକ୍ଷ୍ଣ ଶରୀରରେ ପଶିଯିବା ପରେ ମଧ୍ୟ ଅବିକୃତ ଥିଲା । ସେ ଗଜର କ୍ଳେଶ ଅପନୋଦନ କରିବା ପରେ ଅତି ଶାନ୍ତ ଓ ଅପରାଜିତ ବୋଲି ପୂଜା ପାଇଥିଲା । ଏବେ ସେ ନିଜକୁ ଦର୍ଶନ କରୁଥିବା ପାପୀମାନଙ୍କୁ ପ୍ରମାଦ ଓ ସଂଙ୍କଟରୁ ପୂର୍ଣ୍ଣଭାବରେ ରକ୍ଷା କରିବା ନିମନ୍ତେ ଚକ୍ ଚକ୍ କରୁଅଛି ଓ ଆନନ୍ଦିତ ହେଉଅଛି । ।୯।

| | | |
|---|---|---|
| ଚକ୍ର ଯେ ଶୋହେ ଶ୍ରୀମନ୍ଦିର । | ସୁବିଖ୍ୟାତ ନୀଳଚକର | ॥୯/ ୧॥ |
| ପ୍ରଚଣ୍ଡ ତାର ନୀଳଦ୍ୟୁତି । | ସ୍ୱରୂପ ଚତୁର୍ଦ୍ଧା ମୂରତି | ॥୯/ ୨॥ |
| ସାକ୍ଷାତ୍ ଜଗତ ଈଶ୍ୱର । | ବାମାଙ୍ଗେ ଲକ୍ଷ୍ମୀ ଯା'ବିହାର | ॥୯/ ୩॥ |
| ପାପୀ ସେ କୁମ୍ଭୀର ଶରୀର । | ଅତ୍ୟନ୍ତ ତୀକ୍ଷ୍ଣ ପୃଷ୍ଠ ଯା'ର | ॥୯/ ୪॥ |
| ପଶିଲା ଯେସନ କରତ । | ହାଣି ରହିଲା ଅବିକୃତ | ॥୯/ ୫॥ |
| ଗଜର ଦୂର କରି କ୍ଳେଶ । | ଜଗତେ ରଖିଲା ସେ ଯଶ | ॥୯/ ୬॥ |
| ରୂପ ଶାନ୍ତ ଅପରାଜିତ । | ପୂଜଇ ଯାହାକୁ ଭକତ | ॥୯/ ୭॥ |
| କାନ୍ତି ତା' ବିଜୁଳି ଯେସନ । | ପାପୀ କରିଲେ ତା' ଦର୍ଶନ | ॥୯/ ୮॥ |
| ପ୍ରମାଦୁ ସଙ୍କଟୁ ଉଦ୍ଧାର । | କରି ପାଏ ଖୁସି ଅପାର | ॥୯/ ୯॥ |
| ସେ ଚକ୍ର ନାଶୁ ପାପ ମୋର । | ଯେ ଚକ୍ରୀ ବଳେ ବଳିୟାର | ॥୯/ ୧୦॥ |

ପର୍ଯ୍ୟନ୍ତୋତ୍କୀର୍ଣ୍ଣନାନାଭରଣଚଣତାତନୁଷ୍ଠାତନୁଃ ଶାତଦାୟୀ
ସୋଽନ୍ତଃସନ୍ତାପଶାନ୍ତ୍ୟୈ ବିଳସତୁ କଳଶଃ ସତ୍ସୁଧାଧାରଧାମା ।
ଯଃ ପଦ୍ମାକାନ୍ତସଦ୍ମାଭିଧବିବୁଧଶିରୋଗର୍ଭକାକାରଚକ୍ରା-
କ୍ରାନ୍ତଶ୍ଚୂଡ଼େବ ନିଃଶ୍ରେୟସପଥପଥିକାନର୍ଥହୃଭଦ୍ରକୁମ୍ଭଃ ।୧୦।

ନୀଳଚକ୍ର ତଳକୁ ଥିବା ପୂର୍ଣ୍ଣକୁମ୍ଭ ହିଁ ମନ୍ଦିରର କଳଶ । ତାହା ଦେଖିବାକୁ ବିଶାଳ ଓ ତାହାର ଶରୀରର ଚାରିପାଖରେ ନାନା ରକମର ଚିତ୍ର ରଚନା କରାଯାଇଛି । ସେ ଉତ୍ତମ ଅମୃତର ଆଶ୍ରୟସ୍ଥଳ । ସେ ସାଧାରଣତଃ ସୁଖଦାୟୀ ଓ ମୋକ୍ଷମାର୍ଗର ପଥିକମାନଙ୍କର ଅନର୍ଥ ନାଶକାରୀ ଅଟେ । ଲକ୍ଷ୍ମୀକାନ୍ତ ଜଗନ୍ନାଥଙ୍କ ମନ୍ଦିର ମଦସ୍ତକର କେନ୍ଦ୍ରରେ ଚକ୍ର ଘୋଡ଼ାଇଲା ପରି ରହିଥିବାରୁ ସେ ମନ୍ଦିରର ଚୂଡ଼ା ପରି ଦେଖାଯାଉଅଛି । ସେ ଆମର ଦୁଃଖ ସମୂହର ନାଶ କରିବାରେ ବିଭ୍ରାଜିତ ହେଉ । ।୧୦।

ପୂର୍ଣ୍ଣ କଳଶ ଶୁଭପ୍ରଦ । କାଟଇ ସବୁ ପରମାଦ ॥୧୦/୧॥
ଶ୍ରୀମନ୍ଦିର ଚୂଡ଼ାରେ ଥାଇ । ଶୁଭବାର୍ତ୍ତା ଭକ୍ତେ ଦିଅଇ ॥୧୦/୨॥
ଚକ୍ର ଅଛନ୍ତି ଯା' ଉପରେ । ଅମୃତ ପୂର୍ଣ୍ଣ ତା' ଗର୍ଭରେ ॥୧୦/୩॥
ବିଶାଳ ଅଟଇ ଶରୀର । ଚିତ୍ରେ ସଜ୍ଜିତ କଳେବର ॥୧୦/୪॥
ମୋକ୍ଷ ମାର୍ଗରେ ଯେ ଚାଲଇ । ଅନର୍ଥ ତାର ସେ ନାଶଇ ॥୧୦/୫॥
କରଇ ସୁଖ ସେ ପ୍ରଦାନ । କରିଲେ ତାହାର ଦର୍ଶନ ॥୧୦/୬॥
ଶ୍ରୀମନ୍ଦିରର ଊର୍ଦ୍ଧ୍ୱ ଭାଗ । ରହିଣ ଦିଏ ସଉଭାଗ୍ୟ ॥୧୦/୭॥
ମନ୍ଦିର ଚୂଡ଼ା ପରି ଦିଶେ । ସୌନ୍ଦର୍ଯ୍ୟ ତାର ପରକାଶେ ॥୧୦/୮॥
ଦେବେନ୍ଦ୍ର ଶିରରେ ମୁକୁଟ । ପରାଏ ଦିଶେ ଝଟଝଟ ॥୧୦/୯॥
ହୃଦୟେ ଯେତେକ ଆରତ । ନାଶନେ ଥାନ୍ତୁ ବିରାଜିତ ॥୧୦/୧୦॥
ଯେ କୁମ୍ଭ ଦେବତା ଆକର । ତା ପଦେ ମୋର ନମସ୍କାର ॥୧୦/୧୧॥

ସହ୍ରଣ୍ଠାକର୍ପରାଢ୍ୟାମଳକତତିରତିଦ୍ୟୋତିତା ଦ୍ୟୋତୟନ୍ତୀ
　　ପ୍ରସାଦସ୍ଥୂଳମୂର୍ତ୍ତେର୍ଭବତୁ ଭଗବତଃ ସର୍ବତୋ ବକ୍ତ୍ରଭାବମ୍ ।
ଯାଷ୍ଟାଶୀତ୍ୟଙ୍ଗକୁଷ୍ଠାଷ୍ଟପରିଗୁଣଚତୁଃଷଷ୍ଟିମୁଷ୍ଟ୍ୟନ୍ତନିଷ୍ଟେ-
　　ର୍ଦୃଷ୍ଟ୍ୱା ଭ୍ରଷ୍ଟଂ ଶିରୋବେଷ୍ଟନମପି ତନୁତେ ସାମମାନିଷ୍ଟନଷ୍ଟ୍ୟୈ । ।୧୧।

ମନ୍ଦିର କଳଶର ତଳକୁ ଥିବା ଅଁଳାବେଢ଼ା ମୋର ଅନିଷ୍ଟ ନାଶକରୁ ଯିଏ ବଡ଼ ବଡ଼ ଘଣ୍ଟ କପାଳର ଆକାର ଧାରଣ କରି ବିଶେଷଭାବରେ ଶୋଭା ପାଉଛି । ଭଗବାନଙ୍କ ମନ୍ଦିର ରୂପ ସ୍ଥୂଳ ଶରୀରର ଚାରିପାଖରେ ଥିବା ମସ୍ତକ ମାଳାପରି ଏଗୁଡ଼ିକ ଦେଖା ଯାଉଅଛି । ଏହି ଅଁଳା ବେଢ଼ାର ୮୮ଟି ଅଙ୍ଗ ଅଛି । ଏହାକୁ ୫୧୨ ମୁଷ୍ଟି ଦୂରରୁ ଦେଖିବା ଲୋକର ମୁଣ୍ଡରୁପଗଡ଼ି ଖସିପଡ଼େ । ।୧୧।

| | | | |
|---|---|---|---|
| ବଡ଼ବଡ଼ ଘଣ୍ଟ କପାଳ | । | ଅଠାଅଶୀଟି ମୁଣ୍ଡମାଳ | ॥୧୧/୧॥ |
| ପରାୟେ କଳଶର ତଳେ | । | ଶୋଭା ପାଉଛି ନୀଳାଚଳେ | ॥୧୧/୨॥ |
| ଶ୍ରୀମନ୍ଦିର ନୁହେଁ ମନ୍ଦିର | । | ଜଗନ୍ନାଥ ସ୍ଥୂଳ ଶରୀର | ॥୧୧/୩॥ |
| ଚାରିପାରୁଶେ ଶରୀରର | । | ଦେଉଳ କଣ୍ଠର ଉପର | ॥୧୧/୪॥ |
| ମନ୍ଦିର ଶୋଭା ବଢ଼ାଅଇ | । | ଅଅଁଳାବେଢ଼ା ଅଟେ ସେଇ | ॥୧୧/୫॥ |
| ମନ୍ଦିର ପାଦପୀଠ ଠାରୁ | । | ପାଞ୍ଚଶ ବାର ମୁଠି ଦୂରୁ | ॥୧୧/୬॥ |
| ଯେ ଭକ୍ତ ତାହାକୁ ଚାହିଁଇ | । | ମୁଣ୍ଡୁ ପଗଡ଼ି ଖସି ଯାଇ | ॥୧୧/୭॥ |
| ଅଅଁଳା ବେଢ଼ା ମନ୍ଦିରର | । | ବିଶେସୁନ୍ଦର ଯେ ସେ ମୋର | ॥୧୧/୮॥ |
| ଜଗତନାଥଙ୍କ ପ୍ରଭାବେ | । | ଅନିଷ୍ଟ ନାଶୁ ଯେତେ ଭବେ | ॥୧୧/୯॥ |



ସ୍ୱଷ୍ଟା ସ୍ୱଷ୍ଟାସୁ କାଷ୍ଠାସ୍ୱନୁଘଟିତପତଚ୍ଛେଷକଣ୍ଠୀରବେନ୍ଦ୍ରୈଃ
ପଶ୍ୟଦ୍ଦିଶ୍ୟାଘନାଗପ୍ରଭବପରିଭବୋଲ୍ଲୁଣ୍ଠନାକୁଣ୍ଠବୀର୍ଯ୍ୟୈଃ ।
ଦୃଷ୍ଟିପ୍ରେଷ୍ଠପ୍ରକୃଷ୍ଟପ୍ରତିକୃତିରତୁଳଃ ସୁଷ୍ଠୁନୋଽଧିଷ୍ଠିତାଙ୍ଗୋ
ବୈକୁଣ୍ଠାଗାରକଣ୍ଠୋ ବିଘଟୟତୁ ହଠାତ୍କଷ୍ଟଦାଦୃଷ୍ଟସୃଷ୍ଟିମ୍ ।୧୨।

ବିଷ୍ଣୁଙ୍କ ଦେଉଳର କଣ୍ଠ ଶୀଘ୍ର ଆମର କଷ୍ଟପ୍ରଦ ପ୍ରାରବ୍ଧ କର୍ମକୁ ଭଲଭାବରେ ନାଶକରୁ । ଏ କଣ୍ଠର ଆଠ ଦିଗରେ ପାପରୂପକ ଦିଗ୍‌ଗଜ ଦେଖାଯାଉଅଛନ୍ତି ଏବଂ ଏମାନଙ୍କର ପ୍ରଭାବରୁ ଉତ୍ପନ୍ନ ହେଉଥିବା ତିରସ୍କାରକୁ ପୂରାପୂରି ଭାବେ ଦବେଇ ଦେବାକୁ ପରାକ୍ରମ ନେଇ ଗୁଡ଼ିଏ ସିଂହ ଏହି ସବୁ ଦିଗ୍‌ଗଜମାନଙ୍କ ଉପରେ ଅଙ୍କିତ ହୋଇ ରହିଛନ୍ତି । ଫଳରେ ତାହାର ଆକାରଟି ଅତି ଭଲ ଦେଖାଯାଉଛି ଏବଂ ମନ୍ଦିରର ଶରୀରକୁ ଲାଗିରହିଥିବାରୁ ତାର ତୁଳନା ଥିଲା ପରି ମନେ ହେଉନାହିଁ । ପାପ ରୂପକ ହାତୀଗୁଡ଼ିକର ପ୍ରଭାବକୁ ନଷ୍ଟ କରି ଦେଉଥିବା ସିଂହ ଗୁଡ଼ିକ ସେମାନଙ୍କ ଉପରେ ଅଙ୍କିତ ହୋଇ ଏହି ଦେଉଳ କଣ୍ଠରେ ଥିବାରୁ କଣ୍ଠର ଶୋଭା ଅତୁଳନୀୟ ହୋଇ ଉଠିଛି । ।୧୨।

| | | | |
|---|---|---|---|
| ଜଗନ୍ନାଥ ମନ୍ଦିର କଣ୍ଠ | । | ଶୋଭା ତା ନିନ୍ଦେ ଶିଖୀ କଣ୍ଠ | ॥୧୨/୧॥ |
| ଅଷ୍ଟ ଦିଗେ ଅଷ୍ଟ ଗୁଞ୍ଜର | । | ସ୍ୱରୂପ ଯେମାନେ ପାପର | ॥୧୨/୨॥ |
| ତାଙ୍କ ଉପରେ ଅଷ୍ଟ ହରି | । | ଅଛନ୍ତି ମାଡ଼ି ବସିକରି | ॥୧୨/୩॥ |
| ପାପର ପ୍ରଭାବ ଫଳରେ | । | ଉତ୍ପନ୍ନ ଯେତେ ତିରସ୍କାରେ | ॥୧୨/୪॥ |
| ତାରେ କରନ୍ତି ପରାହତ | । | ତେଜ ତାଙ୍କର ଅଦଭୂତ | ॥୧୨/୫॥ |
| କଣ୍ଠରେ ଯେହ୍ନେ ଅଳଙ୍କାର | । | ବଢ଼ାଏ ସୌନ୍ଦର୍ଯ୍ୟ ତନୁର | ॥୧୨/୬॥ |
| କଣ୍ଠରେ ହରି କରି ସ୍ଥିତି | । | ଲାଗଇ ମନୋହର ଅତି | ॥୧୨/୭॥ |
| ଦେଉଳ କଣ୍ଠ ପ୍ରଭୁଙ୍କର | । | ପ୍ରାରବ୍ଧ କର୍ମ ଯେତେ ମୋର | ॥୧୨/୮॥ |
| ପ୍ରଭାବେ ତାର ନାଶ କରୁ | । | ନୀଳାଦ୍ରି ସିଂହଙ୍କ ଦୟାରୁ | ॥୧୨/୯॥ |

ଜମ୍ବୁଦ୍ୱୀପାଖ୍ୟଭୂପାଖିଳଭୁବନଜୟସ୍ତମ୍ଭ ସମ୍ଭାର ଭାରୀ
ଗର୍ଭସ୍ଥାନନ୍ତବିଶ୍ୱମ୍ଭରଶରଣତୟା ବାଙ୍ମୟାତୀତମାନଃ ।
ସାଙ୍ଗୋପାଙ୍ଗୋଽତିତୁଙ୍ଗୋଽନୁଗୁଣପୃଥୁଳତଃ ପ୍ରେକ୍ଷକାନନ୍ଦକନ୍ଦଃ
ପ୍ରାସାଦେଶୋଽନିଶଂ ନଃ ସ୍ପୃଶତୁ ବିସଦୃଶଃ ସ୍ୱାଶୟଂ ଶ୍ରୀଶମୂର୍ତ୍ତିଃ ।୧୩।

ସମସ୍ତ ଜମ୍ବୁଦ୍ୱୀପର ଅଧିପତିମାନଙ୍କର ଦେଶ ଜୟ କରିବାରେ ଯେଉଁ ଜୟସ୍ତମ୍ଭ କରାଗଲା ସେଗୁଡ଼ିକର ଓଜନରେ ଭାରାକ୍ରାନ୍ତ ଏହି ପ୍ରାସାଦ ନିଜର ଗର୍ଭରେ ଅନନ୍ତ ବ୍ରହ୍ମାଣ୍ଡନାଥଙ୍କୁ ଧରି ଏବଂ ତାଙ୍କର ଶରଣ ପାଇଥିବାରୁ ଅତ୍ୟନ୍ତ ସମ୍ମାନିତ ହେଉଅଛି । ଏହି ପ୍ରାସାଦ ଅତି ତୁଙ୍ଗ ଏବଂ ଏହାର କୌଣସି ଅବୟବ ଖଣ୍ଡିତ ହୋଇ ନାହିଁ । ଏହାର ସ୍ଥୁଳତା ଗୁଣର ଅନୁରୂପ ହୋଇଅଛି । ଏଣୁ ଦର୍ଶକମାନଙ୍କୁ ବିଶେଷ ଆନନ୍ଦ ଦେଇ ପାରୁଅଛି । ଏହି ପ୍ରାସାଦ ପ୍ରଭୁ ଲକ୍ଷ୍ମୀପତିଙ୍କ ମୂର୍ତ୍ତିପରି ଅତୁଳନୀୟ । ସେ ଆମ୍ଭମାନଙ୍କର ଇଚ୍ଛାକୁ ସର୍ବଦା ପୂରଣ କରୁଥାନ୍ତୁ । ।୧୩।

ଜମ୍ବୁଦ୍ୱୀପରେ ଯେତେ ବର୍ଷ । ହରାଇ ସମସ୍ତ ନରେଶ ।।୧୩/୧।।
ଯେତେ ଜୟସ୍ତମ୍ଭ ନିର୍ମିତ । ତାର ଭାରରେ ଭାରାକ୍ରାନ୍ତ ।।୧୩/୨।।
ଏହି ଯେ ସୁଦୃଶ୍ୟ ପ୍ରାସାଦ । ଦର୍ଶନ ଯାର ମୁକ୍ତି ପ୍ରଦ ।।୧୩/୩।।
ଗରଭେ ଧରି ଜଗନ୍ନାଥ । ଅନନ୍ତ ବ୍ରହ୍ମାଣ୍ଡର ନାଥ ।।୧୩/୪।।
ଶରଣ ଯେଣୁ ତାର ପାଇ । ଅତ୍ୟନ୍ତ ସମ୍ମାନୀତ ହୋଇ ।।୧୩/୫।।
ଅତି ତୁଙ୍ଗ ପ୍ରାସାଦ ସେଇ । ତନୁ ଖଣ୍ଡିତ ନାହିଁ ହୋଇ ।।୧୩/୬।।
ଗୁଣାନୁରୂପ ତା ମୋଟେଇ । କାରୁକାର୍ଯ୍ୟ ମନ ମୋହଇ ।।୧୩/୭।।
ପ୍ରାସାଦ ଜଗନ୍ନାଥ ସ୍ୱୟଂ । ଅତୁଳନୀୟ ଅଦ୍ୱିତୀୟ ।।୧୩/୮।।
ଦର୍ଶନେ ଆନନ୍ଦ ସେ ଦିଏ । ଧର୍ମାର୍ଥ କାମ ମୋକ୍ଷ ସିଏ ।।୧୩/୯।।
ବିରାଜି ନୀଳାଦ୍ରି ଉପର । ଯେତେ ଇଛା ସବୁ ଆମର ।।୧୩/୧୦।।
ପୂରଣ କରୁଥାଉ ସେହି । ତାପରି ଆଉ ନାହିଁ କେହି ।।୧୩/୧୧।।
ଯାହାର ନାହିଁ ପଟାନ୍ତର । ପ୍ରଣମେ ସେ ଶିରି ମନ୍ଦିର ।।୧୩/୧୨।।

ପ୍ରାକାରଦ୍ୱନ୍ଦ୍ୱମଧ୍ୟପ୍ରତତସମଦୃାତ୍‌କୁଟିମାଟ୍ଟାପକୃଷ୍ଟ-
ପ୍ରାସାଦାବେଷ୍ଟିତୋଽଧସ୍ତୃତମସୃଣଲସତ୍ ମୁଦ୍ଗପାଷାଣପଟ୍ଟଃ ।
ନାନାକାରାବତାରୈର୍ହରିଣନରବରୈଃ କୁଞ୍ଜରୈ ରଞ୍ଜିତୋଽଞ୍ଜଃ
ପୁଞ୍ଜଂ କୁଞ୍ଜାଧିରାଜାଳୟ ଉପଚୟିନଂ ବ୍ୟଞ୍ଜୟେଚ୍ଛର୍ମ୍ମଣାଂ ନଃ ।୧୪।

ଏହାର ଦୁଇଟି ପ୍ରାଚୀର ମଧ୍ୟରେ ଥିବା ଭୂମି ସମାନିଆ କଟା ପଥରରେ ଆବୃତ ହୋଇଅଛି । ଏହା ଉପରେ ଛୋଟ ଛୋଟ ଦେବ ପ୍ରାସାଦ ରହିଅଛି । ପ୍ରଧାନ ମନ୍ଦିରର ଠିକ୍ ତଳେ ଚିକ୍କଣ ମୁଗୁନି ପଥର ବିଛା ଯାଇଅଛି । ମନ୍ଦିର ଗାତ୍ରରେ ମତ୍ସ୍ୟ କଚ୍ଛପ ଆଦି ନାନା ଅବତାର ଓ ସିଂହ ଓ ହାତୀ ମୂର୍ତ୍ତି ରଖାଯାଇଅଛି । କୁଞ୍ଜର ଅଧିରାଜ ଜଗନ୍ନାଥଙ୍କର ଘର ଏହି ବଡ଼ ଦେଉଳ ଆମ୍ଭମାନଙ୍କର ବର୍ଦ୍ଧମାନ ସୁଖ ସମୂହକୁ ପ୍ରକାଶ କରିଦେଉ । ଆମ୍ଭେମାନେ ବେଶି ସୁଖ ପାଉଁ । ।୧୪।

| | | | |
|---|---|---|---|
| ଶ୍ରୀଜଗନ୍ନାଥଙ୍କ ପ୍ରାସାଦ | । | ଦର୍ଶନେ ଯା ଛାଡ଼େ ପ୍ରମାଦ | ।।୧୪/୧।। |
| ଚାରି ପାରୁଶରେ ତାହାରି | । | ଦୁଇପ୍ରାଚୀର ଛନ୍ତି ଘେରି | ।।୧୪/୨।। |
| ମେଘନାଦ ଅଛି ବାହାରେ | । | କୂର୍ମବେଢ଼ା କାନ୍ଥ ଭିତରେ | ।।୧୪/୩।। |
| ଏଦୁଇ ମଧ୍ୟବର୍ତ୍ତୀ ସ୍ଥଳ | । | ହୋଇ ରହିଛି ସମତଳ | ।।୧୪/୪।। |
| ବଉଳମାଳାର ପଥର | । | ଛାଉଣୀ ହୋଇଛି ତା'ପର | ।।୧୪/୫।। |
| ଦେବ ମନ୍ଦିର ଛୋଟ ଛୋଟ | । | ଅଛି ଯହିଁରେ ବହୁ କ୍ରୋଟ | ।।୧୪/୬।। |
| ମନ୍ଦିରେ କ୍ରୋଟରେ ଦେବତା | । | ଏକୁ ଆରେକ ବଳବନ୍ତା | ।।୧୪/୭।। |
| ଭକ୍ତ କାମନା ଯା' ମନରେ | । | ପୂର୍ଣ୍ଣ କରନ୍ତି ଅକାତରେ | ।।୧୪/୮।। |
| ତଳେ ପ୍ରଧାନ ମନ୍ଦିରର | । | ପଡ଼ିଛି ମୁଗୁନି ପଥର | ।।୧୪/୯।। |
| ପ୍ରମୁଖ ମନ୍ଦିରର ଗାତ୍ର | । | ଅଟେ ଯେ ଅତ୍ୟନ୍ତ ପବିତ୍ର | ।।୧୪/୧୦।। |
| ମତ୍ସ୍ୟ କଚ୍ଛପ କରି ହରି | । | ଆଦି ମୂର୍ତ୍ତିରେ ଅଛି ପୂରି | ।।୧୪/୧୧।। |
| ଏହି କୁଞ୍ଜର ଅଧୀରାଜ | । | ମନୋହର ଯା ସଜ୍ଜାସାଜ | ।।୧୪/୧୨।। |
| ଜଗତ ନାଥଙ୍କ ଆଳୟ | । | ରହେ ଯେ ପ୍ରଳୟୁ ପ୍ରଳୟ | ।।୧୪/୧୩।। |
| ବର୍ଦ୍ଧମାନ ସୁଖ ଆମର | । | ପ୍ରକାଶ କରୁ ବଳେ ତା'ର | ।।୧୪/୧୪।। |
| ଭରୁ ସେ ସୁଖ ଝୋଲା ଆମ | । | ତା' ପଦେ କରୁଛି ପ୍ରଣାମ | ।।୧୪/୧୫।। |

ପ୍ରଗ୍ରୀବଂ ସ୍ୱୋର୍ଦ୍ଧ୍ୱଭାଗଂ ଶିଖରମୃଜୁତରଂ ମଞ୍ଜରୀଂ ମଞ୍ଜୁଳାଭାଂ
ଭିତ୍ତିଂ ଧ୍ୱସ୍ତାଘଭୀତିଂ ତ୍ରିତନୁତନୁଗୃହାନ୍ ବକ୍ତ୍ରଶାଳାଂ ବିଶାଳାମ୍ ।
ପୀଠଂ ଶୀଷ୍ଟାଭିଜୁଷ୍ଟଂ ଗୃହମତିବିତତଂ ଶ୍ରୀଜଗନ୍ମୋହନାଖ୍ୟଂ
ଭୋଗାର୍ଥଂ ମଣ୍ଡପଞ୍ଚାଦ୍ଭୁତମବନିଧବସ୍ୟାଶ୍ରୟେ ପ୍ରଶ୍ରୟେଣ ।୧୫।

ପୃଥିବୀ ପତି ଶ୍ରୀ ଜଗନ୍ନାଥଙ୍କର ଏହି ସବୁ ଜିନିଷକୁ ମୁଁ ଉତ୍କଣ୍ଠା ଓ ଭକ୍ତିର ସହିତ ଆଶ୍ରୟ କରୁଅଛି । ମନ୍ଦିରର କଣ୍ଠ ତଳକୁ ଥିବା ଛାତି ଏବଂ ତାର ଉର୍ଦ୍ଧ୍ୱଭାଗ ଅଛି । ଏହି ଛାତି ଓ ଉର୍ଦ୍ଧ୍ୱଭାଗରେ ଥିବା ଛୋଟ ଛୋଟ ମନ୍ଦିରଗୁଡ଼ିକର ସରଳ ଶିଖର, ଏହାର ତଳକୁ ସେହି ଛାତିରେ ଥିବା ସରଳରେଖା ସମୂହ ଅତି ରମଣୀୟ ଦେଖା ପଡ଼େ । ମନ୍ଦିର ଗୋଲାକର କାନ୍ଥକୁ ଦେଖିଲେ ପାପ ଭୟ ନଷ୍ଟ ହୋଇଯାଏ । ତା ତଳକୁ ତିନୋଟି ଛୋଟ ଘର ଅଛି ଯେଉଁଥିରେ ଗଣେଶ,ବରାହ ଓ ବାମନ ଅଛନ୍ତି । ତାପରେ ବିଶାଳ ମୁଖଶାଳା । ଏହାପରେ ଜଗମୋହନ ନାମକ ଗୃହପୀଠ, ଯେଉଁ ଗୃହ ଅତି ବିସ୍ତୃତ ଏବଂ ଯହିଁରେ ଶିଷ୍ଟ ଲୋକେ ବରାବର ବସି ରହିଥାନ୍ତି । ଶେଷ ଭାଗରେ ଭୋଗ ମଣ୍ଡପ ଅଛି, ଯହିଁରେ ସାଧାରଣ ଭୋଗ ଲାଗେ । ।୧୫।

କଣ୍ଠ ତଳ ଶ୍ରୀମନ୍ଦିରର । ପ୍ରଗ୍ରୀବ ଅଟେ ନାମ ତା'ର ॥୧୫/ ୧॥
ଛାତି ଓ ତାର ଉର୍ଦ୍ଧ୍ୱଭାଗେ । ଛୋଟ ମନ୍ଦିର ବଡ଼ ବାଗେ ॥୧୫/ ୨॥
ସୁନ୍ଦର ଦିଶଇ ଶିଖର । ସରଳରେଖା ତଳେ ତାର ॥୧୫/୩॥
ଦିଶଇ ବ୍ରହ୍ମାଣ୍ଡେ ଯେପରି । ଅନେକ ଗ୍ରହ ଛନ୍ତି ପୂରି ॥୧୫/୪॥
ଦେଉଳେ ଏହି ପରକାର । ଶୋଭନ୍ତି ଅନେକ ମନ୍ଦିର ॥୧୫/୫॥
ଅତ୍ୟନ୍ତ ରମଣୀୟ ଦିଶେ । ଶୋଭାର ଆଭା ତା ପ୍ରକାଶେ ॥୧୫/୬॥
ମନ୍ଦିର କାନ୍ଥ ଗୋଲାକାର । ବିଶାଳ ବପୁ ମନୋହର ॥୧୫/୭॥
ପାପ ଭୟ ନଷ୍ଟ ହୁଅଇ । ଦେଖିଲେ ଛାଡ଼ିଣ ପଳାଇ ॥୧୫/୮॥
ତାର ତଳକୁ ତିନି ଗୃହ । ବାମନ ଗଣେଶ ବରାହ ॥୧୫/୯॥
ତିନି ଦିଗେ ତିନି ଦେବତା । ଅଛନ୍ତି ସେ ପାର୍ଶ୍ୱ ଦେବତା ॥୧୫/ ୧୦॥
ମନ୍ଦିର ଗାତ୍ରକୁ ଆବୋରି । ବିଜେ ଯେ ମନ୍ଦିରରେ ହରି ॥୧୫/ ୧୧॥
ପୂର୍ବକୁ ମୂଳ ମନ୍ଦିରର । ଶୋହେ ମୁଖଶାଳା ତାହାର ॥୧୫/ ୧୨॥
ପୂର୍ବରେ ତା ଜଗମୋହନ । ଭକତେ କରନ୍ତି ଜଣାଣ ॥୧୫/ ୧୩॥

| | | | |
|---|---|---|---|
| ଷୋଳଖମ୍ବରେ ସିଏ ଠିଆ | । | ଭକତି ଭାବ ଦିଆନିଆ | ॥୧୫/୧୪॥ |
| ବିସ୍ତୃତ ଅଟେ ଯା'ର ରୂପ | । | ଭକ୍ତେ କରନ୍ତି ବସି ଜପ | ॥୧୫/୧୫॥ |
| ଭୋଗ ମଣ୍ଡପ ତାର ଆଗ | । | ଯହିଁ ହୁଏ ଭଅଣ୍ଡ ଭୋଗ | ॥୧୫/୧୬॥ |
| ବିଚିତ୍ର ଶ୍ରୀମନ୍ଦିର ଏହି | । | ଜଗତ ନାଥ ବସି ଯହିଁ | ॥୧୫/୧୭॥ |
| ଭକ୍ତର ନାଶନ୍ତି ଆରତ | । | ତାଙ୍କ ଚରଣେ ଦଣ୍ଡବତ | ॥୧୫/୧୮॥ |

**ପ୍ରେଙ୍ଖନ୍ ଶଙ୍ଖସ୍ୟନାଭୌ ସତତଗତିବଶାଦ୍ଦାହୁଦଣ୍ଡୈଃ ପ୍ରଚଣ୍ଡୈଃ**
**ଶାଖାଭିଷ୍ଷଣ୍ଡରୋଚିସ୍ତନୁଜନିଜଜନାନ୍ ବାରୟନ୍ କିଂ ବିଦୂରାତ୍ ।**
**କଳ୍ପାନ୍ତେଽପ୍ୟନ୍ତହୀନଃ ସକଳକଲୁଷହୃତ୍ ସିନ୍ଧୁରାଜୋଽଧିରୋଧୋ-**
**ନ୍ୟଗ୍ରୋଧଃ କ୍ରୋଧକାମାଦ୍ୟରିପରିଭବକୃଭୂତବର୍ଗସ୍ୟ ଭୂୟାତ୍ ।୧୬।**

ମନ୍ଦିରରେ ଥିବା କଳ୍ପବଟ କଳ୍ପ କାଳରେ ମଧ୍ୟ ନାଶ ହୁଏ ନାହିଁ, ସେ ସକଳ ପ୍ରକାର ପାପ ନାଶ କରେ । ସେ ମହାସାଗରର ତୀରରେ ଅବସ୍ଥିତ ରହିଛି । ସେ ପ୍ରାଣୀମାନଙ୍କର କାମ, କ୍ରୋଧ ଆଦି ଶତ୍ରୁମାନଙ୍କୁ ପରାସ୍ତ କରୁ ଏହା ମୋର ପ୍ରାର୍ଥନା । ଶଙ୍ଖ କ୍ଷେତ୍ରର ନାଭିରେ ରହି ପବନ ଯୋଗେ ପ୍ରଚଣ୍ଡ ଭୁଜଦଣ୍ଡ ରୂପକ ଶାଖା ଚାଳନାରେ ସୂର୍ଯ୍ୟପୁତ୍ର ଯମର ଦୂତମାନଙ୍କୁ ବହୁ ଦୂରରୁ ଏହି କଳ୍ପବଟ ବାରଣ କରୁଅଛି କି ? ।୧୬।

| | | | |
|---|---|---|---|
| ଶଙ୍ଖକ୍ଷେତ୍ରର ନାଭି ଦେଶେ | । | ଯେଉଁ କଳପ ବଟ ଦିଶେ | ॥୧୬/୧॥ |
| ଉତ୍କଳ ମହୋଦଧି କୂଳେ | । | ପୁରୁଷୋତ୍ତମ ନୀଳାଚଳେ | ॥୧୬/୨॥ |
| ଶାଖା ପ୍ରଚଣ୍ଡ ଭୁଜଦଣ୍ଡ | । | ତତ୍ପର ଦେବାକୁ ଯେ ଦଣ୍ଡ | ॥୧୬/୩॥ |
| ସୂର୍ଯ୍ୟ ପୁତ୍ର ଯମର ଦୂତେ | । | ଭୟେ ନ ଆସନ୍ତି ଅଗ୍ରତେ | ॥୧୬/୪॥ |
| ସେ କଳ୍ପବଟ ପୁଣ୍ୟବନ୍ତ | । | କଳ୍ପରୁ କଳ୍ପ ସେ ଜୀବନ୍ତ | ॥୧୬/୫॥ |
| ପୂରାଏ ଭକ୍ତ ମନୋବାଞ୍ଛା | । | ମନାସେ ଯିଏ ଯାହା ଇଚ୍ଛା | ॥୧୬/୬॥ |
| କ୍ରୂରତା କ୍ରୋଧ ଅହଂକାର | । | ସ୍ୱାର୍ଥ ମୋହ ମଦ ମତ୍ସର | ॥୧୬/୭॥ |
| ଭୋଗେଚ୍ଛା ମଦ ପକ୍ଷପାତ | । | ସାଧକ ଶତ୍ରୁ ରୂପେ ଖ୍ୟାତ | ॥୧୬/୮॥ |
| ସେ ଶତ୍ରୁରେ ଯେମନ୍ତ ଜିତି | । | ହେ କଳ୍ପବଟ ଦିଅ ଶକ୍ତି | ॥୧୬/୯॥ |
| ଏତିକି ଦୟା କର ମୋରେ | । | ଦିବସ ରାତି ମୁହିଁ ସ୍ମରେ | ॥୧୬/୧୦॥ |

ଭଦ୍ରାଭୂମାଧବଶ୍ରୀମୁଷଳଭୃଦରିଭିଃ ଶୋଭିତଃ ଶ୍ରୀବପୁଷ୍ମା-
ନସ୍ମାନୂଷ୍ଣାଂଶୁଜୋଷ୍ମାଗମଶମନଘନଃ ପାତୁ ଦେବାଧିଦେବଃ ।
ଜନ୍ତୁର୍ମନ୍ତୁନ୍ନିହନ୍ତୁଂ ପ୍ରଭବତି ଶତଶୋଽହାୟ ଯନ୍ନାମ ଗୃହନ୍
ପଶ୍ୟନ୍ ଭ୍ରଶ୍ୟତ୍ୟବଶ୍ୟଂ ବିଷୟଜଳନିଧୌ ନୈବ ଯଂ ଦୈବଭୃତ୍ୟଃ ।୧୭।

ଅଦୃଷ୍ଟାଧୀନ ପ୍ରାଣୀ ମଧ୍ୟ ଯେଉଁ ଜଗନ୍ନାଥଙ୍କର ନାମ ୧୦୦ଥର ଜପ କଲେ ତତ୍କ୍ଷଣାତ୍ ନିଜର ଅପରାଧ ନାଶ କରି ଦେବାକୁ ସମର୍ଥ ହୁଏ; ଯାହାକୁ ଦେଖିବା ମାତ୍ରକେ ସଂସାର ସାଗରରେ ପଡ଼ିବାକୁ ହୁଏ ନାହିଁ; ଯେଉଁ ଜଗନ୍ନାଥ ଦେବତାମାନଙ୍କର ପ୍ରଭୁ; ଯେ ଶୋଭନ ବପୁଶାଳୀ; ଯେ ସୂର୍ଯ୍ୟପୁତ୍ର ଯମକୁ ଶାନ୍ତ କରିବାରେ ବର୍ଷୁକ ମେଘର କାମ କରନ୍ତି ଏବଂ ଯେଉଁ ଜଗନ୍ନାଥ, ସୁଭଦ୍ରା, ଭୂଦେବୀ, ମାଧବ, ବଳଭଦ୍ର ଓ ସୁଦର୍ଶନଙ୍କ ଦ୍ୱାରା ଶୋଭା ପାଉଅଛନ୍ତି ସେ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ।୧୭।

ଯେଉଁ ଜଗନ୍ନାଥଙ୍କ ନାମ । ଜପିଲେ ନାହିଁ ପୁନର୍ଜନ୍ମ ॥୧୭/୧॥
ଅଦୃଷ୍ଟାଧୀନ ଯେଉଁ ଜୀବ । ଡାକଇ ଜଗନ୍ନାଥ ଦେବ ॥୧୭/୨॥
ଶତ ସଂଖ୍ୟାରେ କଲେ ଜପ । ତକ୍ଷଣେ ନାଶେ ସର୍ବ ପାପ ॥୧୭/୩॥
ଦର୍ଶନ ମାତ୍ରେ ଜୀବ ଯା'ର । ନ ପଡ଼େ ସଂସାର ସାଗର ॥୧୭/୪॥
ଉଦ୍ଧାର ଜୀବର ହୁଅଇ । ଜୀବକୁ ଯମ ନ ବାନ୍ଧଇ ॥୧୭/୫॥
କାଳିଆ ହାତୀ ଜଗନ୍ନାଥ । ଦେବତାଗଣଙ୍କର ନାଥ ॥୧୭/୬॥
ଅଚଳ ମହାମେରୁ ପ୍ରଭୁ । ଅଯୋନି ଜାତ ସେ ସ୍ୱୟମ୍ଭୂ ॥୧୭/୭॥
ଶମନ ତାପୁ ସେ ରଖଇ । ବର୍ଷୁକ ମେଘ ପ୍ରାୟ ହୋଇ ॥୧୭/୮॥
ସେ ପ୍ରଭୁ ଜଗତର ନାଥ । ଡରଇ ଯାହାରେ ପ୍ରମଥ ॥୧୭/୯॥
ଶ୍ରୀଦେବୀ ଭୂଦେବୀ ସହିତ । ସୁଦର୍ଶନ ଭଦ୍ରା ଅନନ୍ତ ॥୧୭/୧୦॥
ଶୋଭନ୍ତି ରତ୍ନ ସିଂହାସନ । ମୋ ପ୍ରଭୁ କମଳ ଲୋଚନ ॥୧୭/୧୧॥
ରଖୁ ନ ରଖୁ ସେ ମୋ ନାଥ । ନମସ୍ତେ ପ୍ରଭୁ ଜଗନ୍ନାଥ ॥୧୭/୧୨॥

ସାର୍ଦ୍ଧଂ ଯେନେନ୍ଦୁପଦ୍ମାଦ୍ୟଖିଳମୁପମିତିଦ୍ରବ୍ୟମାସୀତ୍ କୃତାର୍ଥଂ
ବିଦ୍ଭିର୍ବର୍ଣ୍ଣ୍ୟମାନଂ ଯଦନୁମିତିକୃତଃ କୃତ୍ରିମଂ ବିଶ୍ୱମାହୁଃ ।
ଶବ୍ଦବ୍ରହ୍ମ ପ୍ରମାଣଂ ଯଦବୟବଜନେର୍ଯୋଽସକୃନ୍ନାରଦାଦ୍ୟୈଃ
ସାକ୍ଷାଲ୍ଲକ୍ଷୋଽପି ସାକ୍ଷୀ ଭବତି ନବନବଃ ଶ୍ରୀଧବଃ ସୋଽବତାନ୍ନଃ ।୧୮।

ଚନ୍ଦ୍ର ଓ ପଦ୍ମ ପ୍ରଭୃତି ଉପମାନବସ୍ତୁ ଯାହା ସହ ସଂପର୍କ ହେତୁରୁ ଧନ୍ୟ ହୋଇ ଅଛନ୍ତି, ଯାହାଙ୍କୁ ଅନୁମାନ କରିବା ଦ୍ୱାରା ତାର୍କିକମାନେ, ପଣ୍ଡିତମାନେ ବର୍ଣ୍ଣନା କରିଥିବା ଏହିସଚରାଚର ବିଶ୍ୱକୁ କୃତ୍ରିମ ବୋଲି କହନ୍ତି ଯାହାଙ୍କ ଅବୟବରୂପୀ ଜଗତର ଉତ୍ପତ୍ତି ନିମନ୍ତେ ଶବ୍ଦରୂପୀ ବ୍ରହ୍ମ ହିଁ ପ୍ରମାଣ ଏବଂ ଯାହାଙ୍କୁ ନାରଦ ଆଦି ମହର୍ଷିମାନେ ପ୍ରତ୍ୟକ୍ଷରେ ଦେଖିପାରୁଥିଲେ ମଧ୍ୟ ସେ ସ୍ୱୟଂ ଦ୍ରଷ୍ଟା ରୂପରେ ରହିଛନ୍ତି, ସେହି ଲକ୍ଷ୍ମୀପତି ଶ୍ରୀ ଜଗନ୍ନାଥ ନିତ୍ୟ ନୂତନ ହୋଇ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ।୧୮।

ଉପମେୟ ଯା ସମ୍ପର୍କରେ । ଆସିବା ହେତୁ ଏସଂସାରେ ॥୧୮/୧॥
ଉପମାନ ଚନ୍ଦ୍ର କମଳ । ଜୀବନ ହୋଇଛି ସଫଳ ॥୧୮/୨॥
ସଚରାଚର ଏ ଜଗତ । ବର୍ଣ୍ଣିଲେ ଯାହାରେ ପଣ୍ଡିତ ॥୧୮/୩॥
ଯାହାକୁ କରି ଅନୁମାନ । ତାର୍କିକେ ହୁନ୍ତି ବୁଦ୍ଧି ଶୂନ୍ୟ ॥୧୮/୪॥
ତାହାକୁ ବୋଲନ୍ତି କୃତ୍ରିମ । ବୁଦ୍ଧିକୁ ଆବୋରଇ ଭ୍ରମ ॥୧୮/୫॥
ଜଗତ ଅବୟବରୂପୀ । ପ୍ରମାଣ ବ୍ରହ୍ମ ଶବ୍ଦ ରୂପୀ ॥୧୮/୬॥
ଯା ଅବୟବ ଏ ଜଗତ । ସାଥେ ଯିଏ ତା ଆତଯାତ ॥୧୮/୭॥
ନାରଦାଦି ମହର୍ଷିମାନେ । ପ୍ରତ୍ୟେକ୍ଷ ସନ୍ତୁଷ୍ଟ ଦର୍ଶନେ ॥୧୮/୮॥
ଦ୍ରଷ୍ଟା ରୂପରେ ସ୍ରଷ୍ଟା ହୋଇ । ବ୍ରହ୍ମାଣ୍ଡେ ଲୀଳା ଯେ କରଇ ॥୧୮/୯॥
ସେହି ପ୍ରଭୁ କାଳିଆ ସାଇଁ । ନିତି ନୂତନ ରୂପ ହୋଇ ॥୧୮/୧୦॥
ଭକତେ କରୁଥାଉ ରକ୍ଷା । ତା ପାଦତଳେ ଏହି ଭିକ୍ଷା ॥୧୮/୧୧॥

ଦ୍ରବ୍ୟୈର୍ଜାତୁପମାନଂ ନ ଭବତି କୃତିନାଂ ପ୍ରାକୃତୈର୍ଜାତଦୋଷଂ
ସର୍ବାନ୍ତର୍ଯାମିଭାବାଦ୍ଧ୍ୟୁତିମତି କୃତିଭିର୍ଯସ୍ୟ ଲୋକୋତ୍ତରସ୍ୟ ।
ବ୍ୟକ୍ତାବ୍ୟକ୍ତେଷୁ ସତ୍ତ୍ୱେଷ୍ୱପରିମିତନିଜବ୍ୟାପ୍ତିମୁଦ୍ବ୍ୟକ୍ତୁକାମଃ-
ସ୍ତମ୍ଭାଦ୍ୟୋ ଦିବ୍ୟସିଂହୋଽଭବଦିହ ଚ ମହାଦାରୁଦେହଃ ସନୋଽବ୍ୟାତ୍ ।୧୯।

ଶ୍ରୀଜଗନ୍ନାଥ ଲୋକୋତ୍ତର ହେତୁ ସର୍ବାନ୍ତର୍ଯ୍ୟାମୀ । ତେଣୁ ପ୍ରାକୃତ ଦ୍ରବ୍ୟ ତାଙ୍କର ଉପମାନ ହେଲେ ଦୋଷ ରହିଯିବ । ଏଥିନିମନ୍ତେ କବିମାନଙ୍କର ରୂପ, ବୁଦ୍ଧି ଓ ପ୍ରଯତ୍ନ ହେବା ଅନୁଚିତ । ଯେ ବ୍ୟକ୍ତ ଓ ଅବ୍ୟକ୍ତ ଏବଂ ସବୁ ଦ୍ରବ୍ୟରେ ନିଜର ଅସଂଖ୍ୟ ପ୍ରକାଶ ଦେଖାଇବା ନିମନ୍ତେ ଖୁଣ୍ଟରୁ ମଧ୍ୟ ଦିବ୍ୟ ସିଂହରୂପ ଧରି ବାହାର ହୋଇଥିଲେ, ସେହି ମହାଦାରୁ ବ୍ରହ୍ମ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ।୧୯।

ପ୍ରଭୁ ଶ୍ରୀ ଜଗନ୍ନାଥ ସ୍ୱାମୀ । ଲୋକୋତ୍ତର ସର୍ବାନ୍ତର୍ଯ୍ୟାମୀ ॥୧୯/୧॥
ପ୍ରାକୃତ ଦ୍ରବ୍ୟ ଉପମାନ । ତାଙ୍କର କଲେ ଦୋଷ ଗୁଣ ॥୧୯/୨॥
ପ୍ରଯତ୍ନ ରୂପ ତା'ର ବୁଦ୍ଧି । ତୁଳନା କରେ କବି ଯଦି ॥୧୯/୩॥
ବ୍ୟକ୍ତ ଅବ୍ୟକ୍ତ ରୂପ ତା'ର । ଖମ୍ବରୁ ହେଲେ ଯେ ବାହାର ॥୧୯/୪॥
ସବୁ ଦ୍ରବ୍ୟରେ ସ୍ଥିତି ତା'ର । ଯା'ର ନୃସିଂହ ଅବତାର ॥୧୯/୫॥
ସେ ପ୍ରଭୁ ଦାରୁବ୍ରହ୍ମ ରୂପେ । ବସିଛି ନୀଳାଚଳ ଦ୍ୱିପେ ॥୧୯/୬॥
ଭୟ ଯାହାରେ ଭୟ କରେ । ନିତି ଦିନ ମୁଁ ତାକୁ ସ୍ମରେ ॥୧୯/୭॥
ଯେ ସର୍ବ ହୃଦ ମଧ୍ୟେ ଥାଇ । ଜୀବେ ସର୍ବ କର୍ମ କରାଇ ॥୧୯/୮॥
ସବୁ ଆପଦ ବିପଦରୁ । ସେ ପ୍ରଭୁ ଆମକୁ ଉଦ୍ଧରୁ ॥୧୯/୯॥
ସେ ପ୍ରଭୁ ନୀଳାଚଳ ନାଥ । ତା'ର ଚରଣେ ମୋର ମାଥ ॥୧୯/୧୦॥



ପାରାବାରପ୍ରତୀରପ୍ରଥିତବଟମହାପାଦପସ୍ପର୍ଶନାଶା-
ପ୍ରୋଦ୍ୟତ୍ ପ୍ରାସାଦପୀଠାର୍ପିତବିପୁଳବପୁଃ ପାଣ୍ଡୁ ପଦ୍ମୋପମାକ୍ଷ୍ୟଃ ।
ପୂର୍ଣ୍ଣପ୍ରେମପ୍ରଦାନପ୍ରବଣ ଉପନିଷତ୍ପ୍ରାର୍ଥ୍ୟମାନାନୁନମ୍ରଃ
ପାପୌଘାନ୍ମାଂପୁନୀୟାତ୍ ପତିତପତିମୟଂ ପୂତନାପ୍ରାଣପାୟୀ ।୨୦।

ଯେଉଁ ପ୍ରଭୁ ପୂର୍ବସାଗର ତୀରରେ ଥିବା ପ୍ରସିଦ୍ଧ ମହାକଳ୍ପ ବଟବୃକ୍ଷର ସ୍ପର୍ଶଥିବା ଦିଗରେ ଯେଉଁ ସୁନ୍ଦର ମନ୍ଦିର ରହିଅଛି ତହିଁରେ ଥିବା ପୀଠରେ ବସିରହି ଅଛନ୍ତି,ଯାହାଙ୍କର ଆଖିଦୁଇଟି ଧଳା ପଦ୍ମ ପରି ଦେଖା ଯାଉଛି, ଯେ ପୂତନା ରାକ୍ଷସୀର ପ୍ରାଣକୁ ଶୋଷୀ ଦେଇଥିଲେ, ଉପନିଷଦ ଯାହାର ସ୍ତୁତିଗାନ କରୁ ଅଛନ୍ତି, ଯେ ଅନୁଗତମାନଙ୍କ ନିକଟରେ ଅତି ବିନୀତ, ଯେ ଭକ୍ତମାନଙ୍କୁ ପୂର୍ଣ୍ଣସ୍ନେହ ପ୍ରଦାନ କରିବାରେ ତତ୍ପର ସେହି ପ୍ରଭୁ ଶ୍ରୀ ଜଗନ୍ନାଥ ମୋ ପରି ପତିତମାନଙ୍କର ରାଜାକୁ ପାପରାଶିରୁ ଉଦ୍ଧାର କରିବେ ଏହାହିଁ ପ୍ରାର୍ଥନା । ।୨୦।

| | | | |
|---|---|---|---|
| ଉତ୍କଳ ମହୋଦଧି ତୀରେ | । | ସୁନ୍ଦର ଶିରି ମନ୍ଦିରରେ | ॥୨୦/୧॥ |
| ପ୍ରସିଦ୍ଧ କଳ୍ପବଟ ପାର୍ଶ୍ୱେ | । | ରତନବେଦୀରେ ହରଷେ | ॥୨୦/୨॥ |
| ବସିଛି ଜଗତ କାରଣ | । | ଯା କାମ ଭକ୍ତ ଉଦ୍ଧାରଣ | ॥୨୦/୩॥ |
| ଢେଲା ଢେଲା ଦୁଇ ନୟନ | । | ଦୁଇ କମଳଶ୍ୱେତ ବର୍ଣ୍ଣ | ॥୨୦/୪॥ |
| ସଂସାର ବିଷକୁ ଯେ ଶୋଷୀ | । | କେତେ ବା ପୁତନା ରାକ୍ଷସୀ | ॥୨୦/୫॥ |
| ବେଦୋପନିଷଦେ ଯା' ସ୍ତୁତି | । | ଋଷି ମୁନିଏ କରିଛନ୍ତି | ॥୨୦/୬॥ |
| ସେ ପ୍ରଭୁ ଅତ୍ୟନ୍ତ ବିନୀତ | । | ନିକଟେ ତାର ଅନୁଗତ | ॥୨୦/୭॥ |
| ପୂର୍ଣ୍ଣ ସ୍ନେହ ଭକତେ ଦେଇ | । | ଭକତ ବନ୍ଧୁ ଅଟେ ସେଇ | ॥୨୦/୮॥ |
| ପତିତ ଉଦ୍ଧାରଣ ପାଇଁ | । | ନୀଳାଚଳେ ସେ ବସିଛନ୍ତି | ॥୨୦/୯॥ |
| ଉଡ଼ାଇ ବିଜୟ କେତନ | । | ନାମ ଯା ପତିତପାବନ | ॥୨୦/୧୦॥ |
| ପାପରେ ପୂର୍ଣ୍ଣ ଅସ୍ଥି ମଜ୍ଜା | । | ମୁଁ ଅଟେ ପତିତଙ୍କ ରାଜା | ॥୨୦/୧୧॥ |
| ତା ପାଦେ ପ୍ରାର୍ଥନା କରଇ | । | ଉଦ୍ଧର ନୀଳାଚଳ ସାଇଁ | ॥୨୦/୧୨॥ |

ଲକ୍ଷ୍ମୀଭୃନ୍ନାଗସଦ୍ମାମୃତଖନିରଶନିତ୍ରାସିତକ୍ଷ୍ମାଭୃଦୀଶ-
ସ୍ଥାନଂ ସ୍ୱର୍ଗାପଗାୟାଃ ପ୍ରଭୁରଖିଳନୃଣାଂ ପାପସନ୍ତାପହନ୍ତା ।
ଶ୍ୟାମଶ୍ରୀର୍ମୀନକୂର୍ମାଦ୍ୟମିତତନୁଧରଃ ଶଙ୍ଖଚକ୍ରାବ୍ଜବାହଃ
କଳ୍ପାନ୍ତଗ୍ରସ୍ତଲୋକଃ କଳୟତୁ କମଳଂ ତୀର୍ଥରାଟ୍‌କ୍ଳାନ୍ତିଶାନ୍ତ୍ୟୈ ।୨୧।

ସର୍ବସମର୍ଥ ଯେଉଁ ପ୍ରଭୁ ଲକ୍ଷ୍ମୀଧର ଓ ପ୍ରେମ ସୁଧାର ଆକର ଅଟନ୍ତି, ଯେ ଶେଷ ଦେବଙ୍କ ଉପରେ ଶୋଇଛନ୍ତି ଏବଂ ବଜ୍ର ପୀଡ଼ାଗ୍ରସ୍ତ ଗୋବର୍ଦ୍ଧନ ପର୍ବତକୁ ଆଶ୍ରୟ ଦେଇଅଛନ୍ତି, ସ୍ୱପାଦାଙ୍ଗୁଳିରୁ ବାହାରିଥିବା ସ୍ୱର୍ଗଗଙ୍ଗାର ଯେ ପ୍ରଭୁ, ସମଗ୍ର ମାନବ ସମାଜର ପାପ ଜନିତ ସନ୍ତାପକୁ ଯେ ହରଣ କରନ୍ତି, ଯାହାଙ୍କର ଦେହ କଳା ଓ ଯେ ସର୍ବଦା ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଧାରଣ କରିଥାନ୍ତି, ଆବଶ୍ୟକ ହେଲେ ଯେ ମତ୍ସ୍ୟ, କୂର୍ମ ଆଦି ଅନେକ ଶରୀର ଧାରଣ କରିପାରନ୍ତି, ତୀର୍ଥମାନଙ୍କର ରାଜା ଯିଏ କଳ୍ପ ଶେଷରେ ସମସ୍ତ ସଂସାରକୁ ଗ୍ରାସ କରନ୍ତି, ସେହି ପ୍ରଭୁ ଜଗନ୍ନାଥ ଜୀବମାନଙ୍କର ଦୁଃଖ ଅପନୋଦନ କରିବା ନିମନ୍ତେ ବିଶେଷ ଭାବରେ ସୁଖ ବିତରଣ କରନ୍ତୁ । ।୨୧।

ଶ୍ରୀ ଜଗନ୍ନାଥ ଲକ୍ଷ୍ମୀଧର । ସେ ପ୍ରେମ ସୁଧାର ଆକର ॥୨୧/୧॥
ଶେଷଦେବଙ୍କ ପରେ ଶୋଇ । ଗୋବର୍ଦ୍ଧନେ ଆଶ୍ରୟ ଦେଇ ॥୨୧/୨॥
ସ୍ୱର୍ଗ ଗଙ୍ଗାର ପ୍ରଭୁ ସେଇ । ସଂସାର ସନ୍ତାପ ହରଇ ॥୨୧/୩॥
ଚାରି ଆୟୁଧରେ ଶୋଭନ । ଚିକ୍କଣ କଳା ତା ବଦନ ॥୨୧/୪॥
ଦଶାବତାର ସିଏ ଧରେ । ଭକତ ଡ଼ାକିଲେ କାତରେ ॥୨୧/୫॥
ବ୍ରହ୍ମାଣ୍ଡ ତାର ତନୁ ଅଂଶ । କଳ୍ପ ଶେଷରେ କରେ ଗ୍ରାସ ॥୨୧/୬॥
ରାଜା ତୀରଥ ମାନଙ୍କର । ସଂସାର ତାର ଖେଳଘର ॥୨୧/୭॥
ଭକତ ତାର ଆପଣାର । ମୋ ପ୍ରଭୁ କାଳିଆ ଠାକୁର ॥୨୧/୮॥
ଶ୍ରୀକ୍ଷେତ୍ର ଶ୍ରୀମନ୍ଦିର ପତି । ପାଦରେ କରୁଛି ବିନତି ॥୨୧/୯॥
ଦୁଃଖୀ ଦୁଃଖ କରି ହରଣ । ସୁଖ କରନ୍ତୁ ବିତରଣ ॥୨୧/୧୦॥

ଯତ୍ରାସ୍ତେ ସାନୁବିମ୍ବୋଦିତସିତକିରଣପ୍ରୋଜ୍ଜ୍ୱଳଂ ନେତ୍ରଯୁଗ୍ମଂ
ନାସାବାହୂଦରାଂଘ୍ରିସ୍ଫୁରତି ଚ ବିବିଧଦ୍ୱୀପଶୋଭାନୁକାରି ।
ବାରୀବ ଶ୍ୟାମଳଶ୍ରୀର୍ମକରସୁରୁଚିରେ କୁଣ୍ଡଳେ ବାଡ଼ବାଗ୍ନି-
ଜ୍ୱାଳେବୋଦ୍ୟତ୍କିରୀଟଂ ତରଣିବଦଧରଃ ସୋଽସ୍ତୁ ଶାନ୍ତ୍ୟୈକୃପାବ୍ଧିଃ ।୨୨।

ଯାହାର ନେତ୍ର ଦୁଇଟି ଚନ୍ଦ୍ର ଓ ତାହାର ପ୍ରତିବିମ୍ବ ପରି ବଡ଼ ଓ ଉଜ୍ଜ୍ୱଳ; ଯାହାର ନାକ, ବାହୁ, ଉଦର ଓ ପାଦ ନାନାରକମର ଦ୍ୱୀପ ପରି ଶୋଭାଦାୟକ; ଯାହାର ଶ୍ୟାମଳ ଶୋଭା ଜଳ ପରି, ଯେ ଦୁଇଟି ମକର କୁଣ୍ଡଳ ପରିଧାନ କରିଅଛନ୍ତି; ଯାହାର କିରୀଟ ବାଡ଼ବାଗ୍ନିର ଜ୍ୱାଳା ପରି ଜାଜ୍ୱଲମାନ ଏବଂ ଯାହାର ଅଧର ନୌକାପରି ସେହି ଦୟାସାଗର ଜଗନ୍ନାଥ ଆମର ଶାନ୍ତି ନିମନ୍ତେ ବିରାଜମାନ ଥାଆନ୍ତୁ । ।୨୨।

ନୟନ ଦୁଇଟି ଯାହାର । ଚନ୍ଦ୍ର ଓ ପ୍ରତିବିମ୍ବ ତା'ର ॥୨୨/୧॥
ନାକ ପାଦ ବାହୁ ଉଦର । ନାନା ଦ୍ୱୀପ ମଧ୍ୟେ ସାଗର ॥୨୨/୨॥
ଶ୍ୟାମଳ ଶରୀରର ଆଭା । ନୀଳସମୁଦ୍ର ଜଳ ଶୋଭା ॥୨୨/୩॥
କର୍ଣ୍ଣରେ ମକର କୁଣ୍ଡଳ । ଉଜ୍ଜ୍ୱଳ ସୁନ୍ଦର ନିର୍ମଳ ॥୨୨/୪॥
ମଥାରେ ଯେଉଁ ମଥା ମଣି । ବାଡ଼ବାଗ୍ନିର ଜ୍ୱାଳା ଜିଣି ॥୨୨/୫॥
ମୋ ପ୍ରଭୁ ଦୟାର ସାଗର । ନୌକା ଯେସନ ତା ଅଧର ॥୨୨/୬॥
ଭକତେ ଶାନ୍ତି ଦେବା ପାଇଁ । ନୀଳାଚଳରେ ବିରାଜଇ ॥୨୨/୭॥
ଶାନ୍ତି ପ୍ରଦାନେ ଜଗନ୍ନାଥ । କୃପାଳୁ ଯେ ସର୍ବ ସମର୍ଥ ॥୨୨/୮॥
ସେ ପ୍ରଭୁ ଦୟା କରୁ ହେଳେ । ପ୍ରଣମେ ତା'ର ପାଦତଳେ ॥୨୨/୯॥



ବିଭ୍ରଦ୍ଦସୂକ୍ଷପେଶୌ ନୟନଯୁଗମିଷାଦଭ୍ରଶୋଭାମଦଭ୍ରାଂ
ଶୁଭ୍ରଶ୍ରୀର୍ବକତ୍ରଦମ୍ଭାଦଧରପୁଟରୁଚିବାଜତଃ ସାନ୍ଧ୍ୟବେଳାମ୍ ।
ତିର୍ଯ୍ୟଗ୍ୱିସ୍ତୀର୍ଣ୍ଣବୃତ୍ତାତୁଳଭୁଜବଳୟଚ୍ଛଦ୍ମନଷ୍ଟକ୍ରବାଳଂ
ଶୈଳଂ ମଧ୍ୟଚ୍ଛଳାତ୍କାଞ୍ଚନମୁପଚିନୁତାଦ୍ୱିଶ୍ୱଭର୍ତ୍ତା ଶୁଭଂ ନଃ ।୨୩।

ଯେଉଁ ପ୍ରଭୁଙ୍କର ଦୁଇ ନେତ୍ର ଚନ୍ଦ୍ରସୂର୍ଯ୍ୟ, ଯେ ବିଶେଷଭାବରେ ମେଘର ଶୋଭାକୁ ଧାରଣ କରି ଅଛନ୍ତି । ଯିଏ ନିର୍ମଳ ଶୋଭାଧାରକ, ଯାହାର ଅଧରପୁଟର ରଙ୍ଗ ସନ୍ଧ୍ୟାର ରଙ୍ଗ ପରି, ଯାହାର ଅତୁଳନୀୟ, ଅନୁପମ, ବୃତ୍ତାକାର ଓ ବିସ୍ତିର୍ଣ୍ଣ ତିର୍ଯ୍ୟକ ଦୁଇ ଭୁଜ ଦିଗବଳୟର ଶୋଭାକୁ ଧାରଣ କରିଛନ୍ତି, ଯିଏ ନିଜର କଟି ବ୍ୟାଜରେ ସୁବର୍ଣ୍ଣ ପର୍ବତ ଧାରଣ କରିଅଛନ୍ତି, ସେହି ବ୍ରହ୍ମାଣ୍ଡସ୍ୱରୂପୀ ବ୍ରହ୍ମାଣ୍ଡ ପାଳକ ଜଗନ୍ନାଥ ଆମର ମଙ୍ଗଳ କରନ୍ତୁ । ।୨୩।

| | | |
|---|---|---|
| ବ୍ରହ୍ମାଣ୍ଡେ ସୂର୍ଯ୍ୟ ଚନ୍ଦ୍ର ଶୋହେ । | ପ୍ରଭୁର ନେତ୍ର ସେହି ଦୁହେଁ | ॥୨୩/୧॥ |
| ବ୍ରହ୍ମାଣ୍ଡେ ଛନ୍ତି ଜଳଧର । | ପ୍ରାଣୀଙ୍କ ଆଶା ବତୀଘର | ॥୨୩/୨॥ |
| ଜଗନ୍ନାଥ ନୀଳ ଜୀମୁତ । | ଦର୍ଶନେ ଭକ୍ତ ବିମୋହିତ | ॥୨୩/୩॥ |
| ବ୍ରହ୍ମାଣ୍ଡ ସ୍ୱତଃ ଶୁଭ୍ର ହୋଇ । | ନିର୍ମଳ ଶୋଭା ବିରାଜଇ | ॥୨୩/୪॥ |
| ଜଗନ୍ନାଥଙ୍କ ଜ୍ୟୋତି କାନ୍ତି । | ନିର୍ମଳ ରୂପେ ଝଟକନ୍ତି | ॥୨୩/୫॥ |
| ବ୍ରହ୍ମାଣ୍ଡରେ ସନ୍ଧ୍ୟା ହୁଅଇ । | ଅରୁଣିମାରେ ଚମକଇ | ॥୨୩/୬॥ |
| ମୋ ପ୍ରଭୁ ଅଧର ପୁଟର । | ଲାଲିମା ବଡ଼ ମନୋହର | ॥୨୩/୭॥ |
| ବ୍ରହ୍ମାଣ୍ଡେ ଦିଗ୍ ବଳୟ ଅଛି । | ଜୀବକୁ ଠାରରେ ଡାକୁଛି | ॥୨୩/୮॥ |
| ପ୍ରଭୁର ଭୁଜ ଅନୁପମ । | ତିର୍ଯ୍ୟକ ବିସ୍ତୀର୍ଣ୍ଣ ଉତ୍ତମ | ॥୨୩/୯॥ |
| ଅତୁଳନୀୟ ବୃତ୍ତାକାର । | ଦିଗ ବଳୟ ଶୋଭାଧର | ॥୨୩/୧୦॥ |
| ଭକତେ ଡାକେ ତାର ପାଖ । | ଆସ ପାଶୋରି ସବୁ ଦୁଃଖ | ॥୨୩/୧୧॥ |
| ଦୃଶ୍ୟ ବ୍ରହ୍ମାଣ୍ଡ ମଧ୍ୟସ୍ଥଳ । | ଅଛି ସ୍ୱର୍ଣ୍ଣ ମେରୁ ଅଚଳ | ॥୨୩/୧୨॥ |
| ଜଗନ୍ନାଥ ପୀତ ବସନ । | କରି କଟିରେ ପରିଧାନ | ॥୨୩/୧୩॥ |
| ଶୋଭନ୍ତି ସେହି ପରି ତେଜେ । | ନୀଳପର୍ବତେ କରି ବିଜେ | ॥୨୩/୧୪॥ |
| ଯେ ବିଶ୍ୱ ବ୍ରହ୍ମାଣ୍ଡର ନାଥ । | ସେ ପ୍ରଭୁ ମୋର ଜଗନ୍ନାଥ | ॥୨୩/୧୫॥ |
| କରନ୍ତୁ ଆମର ମଙ୍ଗଳ । | ନମୁଛି ତାଙ୍କ ପାଦ ତଳ | ॥୨୩/୧୬॥ |

ଭୂତେଶୋ ଭୂତିଭୂମିର୍ଭବଜଭୟଭରୋଭେଦଭେଦିପ୍ରଭାବୋ-
ଭୂୟାଭୋଗୀନ୍ଦ୍ରଭୋଗାଭରଣବପୁରଭୀଭାବଦୋ ଭୂତଭୂତେଃ ।
ଭୂଭୃତ୍‌ଭୂମୀନ୍ଦ୍ରମୌଳିର୍ଭୃତବରକମଳୋ ଗୌରଭା ଭେଶ ଭଙ୍ଗ-
ପ୍ରଭାଜଭାଳଭତ୍ତିବୃଷଭରଣଚଣଃ ସତ୍ୟଦଭ୍ରାଭିସନ୍ଧିଃ ।୨୪।

ସମସ୍ତ ପ୍ରାଣୀମାନଙ୍କର ପ୍ରଭୁ, ଅଣିମାଦି ଐଶ୍ୱର୍ଯ୍ୟମାନଙ୍କର ସ୍ଥାନ, ସାଂସାରିକ ଅତିଶୟ ଭୟ ପ୍ରକାଶର ନାଶକର୍ତ୍ତା ଭାବରେ ଯେ ପ୍ରଭାବଶାଳୀ, ଅନନ୍ତଙ୍କ ଶରୀର ଯାହାଙ୍କ ଶରୀର ଭୂଷଣ, ପର୍ବତରାଜ ନୀଳାଚଳର କିରୀଟ ରୂପକ ଶ୍ରେଷ୍ଠ କମଳାଙ୍କୁ ଯେ ଧାରଣ କରିଅଛନ୍ତି, ଯାହାଙ୍କର କାନ୍ତି ଚିକ୍କଣ କଳା, ଖଣ୍ଡ ଚନ୍ଦ୍ର ପରି ଯାହାର ବିସ୍ତୃତ ଭାଲ ସ୍ଥଳ, ଧର୍ମ ରକ୍ଷଣପର ବା ବୃଷାସୁରର ଯେ ନାଶକର୍ତ୍ତା, ସାଧୁ ଲୋକ ନିକଟରେ ଯାହାଙ୍କର ହୃଦ୍‌ଗତଭାବ ଅତି ବେଶି ମୁକ୍ତ ଥାଏ, ସେ ପ୍ରଭୁ ଜଗନ୍ନାଥ ପ୍ରାଣୀମାନଙ୍କ ଉନ୍ନତିରେ ଅଭୟ ଦାତା ହୋଇ ରହିଥାନ୍ତୁ । ।୨୪।

| | | | |
|---|---|---|---|
| ପ୍ରାଣୀଙ୍କ ପ୍ରଭୁ ଜଗନ୍ନାଥ | । | ଅନାଥ ଲୋକଙ୍କର ନାଥ | ॥୨୪/୧॥ |
| ଅଣିମାଦି ଐଶ୍ୱର୍ଯ୍ୟମାନ | । | ତା ପାଦତଳେ ବିଦ୍ୟମାନ | ॥୨୪/୨॥ |
| ସାଂସାରିକ ଭୟ ନାଶକ | । | ଚଉଦ ଭୁବନ ଶାସକ | ॥୨୪/୩॥ |
| ଅନନ୍ତ ଯା ତନୁ ଭୂଷଣ | । | ଅନନ୍ତ ତା'ର ରୂପ ଗୁଣ | ॥୨୪/୪॥ |
| ଶୈଳରାଜ ନୀଳାଦ୍ରି ମଣି | । | ପଦ୍ମପ୍ରିୟା ପଦ୍ମା ଯା ରାଣୀ | ॥୨୪/୫॥ |
| ଖଣ୍ଡଚନ୍ଦ୍ର ପ୍ରାୟ ବିସ୍ତୃତ | । | ଭାଲପଟ ଯା'ର ମହତ | ॥୨୪/୬॥ |
| କଜ୍ଜଳ ପ୍ରାୟ ଯା' ଶରୀର | । | ନିନ୍ଦଇ ନବ ବାରିଧର | ॥୨୪/୭॥ |
| ଧର୍ମ ବୃଷଭର ରକ୍ଷକ | । | ପ୍ରିୟ ତାଙ୍କର ସାଧୁ ଲୋକ | ॥୨୪/୮॥ |
| ହୃଦୟ ଯା' ଭକତ ପାଇଁ | । | ଆକାଶ ଯେହ୍ନେ ଖୋଲା ଥାଇ | ॥୨୪/୯॥ |
| ସେ ପ୍ରଭୁ ଦିଅନ୍ତୁ ଅଭୟ | । | ପ୍ରାଣୀ ଉନ୍ନତି ଯହିଁ ଥୟ | ॥୨୪/୧୦॥ |
| ଶ୍ରୀଜଗନ୍ନାଥଙ୍କ ଚରଣେ | । | ପ୍ରଣମେ ମୁହିଁ ପ୍ରତିକ୍ଷଣେ | ॥୨୪/୧୧॥ |

ସର୍ବାରାଧ୍ୟା ସିତକ୍ଷ୍ମାଧରପରମଯଶୋଭୂତିବିଖ୍ୟାତିହେତୁ-
ର୍ମାତା ଲୋକସ୍ୟ ଦୃପ୍ୟନ୍ମଧୁବଧମୁଦିତାଦିତ୍ୟଗୀତପ୍ରଶସ୍ତିଃ ।
ପାତାଚ୍ଚଣ୍ଡାଦିଦୈତ୍ୟାଭଭିଦନଖରରୁକ୍‌ଚନ୍ଦ୍ରକାନ୍ତୋତ୍ତମାଙ୍ଗ-
ଶ୍ରୀରସ୍ମାନ୍ ସର୍ବଦୋମେଶ୍ୱର ଉଦିତରତିଃ କେଳିକାନ୍ତାଙ୍ଗସଂଭୃତ୍ ।୨୫।

ଯେଉଁ ପ୍ରଭୁ କେଳି ନିମନ୍ତେ ନିଜ କାନ୍ତା ଲକ୍ଷ୍ମୀଙ୍କୁ ସ୍ୱଶରୀରରେ ଧାରଣ କରିଥାନ୍ତି, ଯାହାଙ୍କଠାରୁ ସବୁବେଳେ ଅନୁରାଗ ବାହାରୁ ଥାଏ, ଯିଏ ଅତ୍ୟନ୍ତ ଉଗ୍ର ଦୈତ୍ୟ ହିରଣ୍ୟକଶିପୁର ପରାଭବ ନିମନ୍ତେ ନିଜ ନଖ ଗୁଡ଼ିକର ଦୀପ୍ତି ଦେଖାଇଥିଲେ, ଗର୍ବୀ ମଧୁଦୈତ୍ୟକୁ ବଧ କରିବାରେ ଆନନ୍ଦିତ ଦେବତାମାନେ ଯାହାଙ୍କୁ ଅତି ଉଚ୍ଚ ପ୍ରଶଂସା କରିଥିଲେ, ଚତୁର୍ଦ୍ଦଶ ବ୍ରହ୍ମାଣ୍ଡର ନିର୍ମାତା ତଥା ସର୍ବ ପୂଜ୍ୟ, ନୀଳାଚଳର ଯଶ ରୂପକ ସମ୍ପତ୍ତି ବିଖ୍ୟାତ ହେବାରେ ଯେ କାରଣ ହୋଇ ରହିଛନ୍ତି, ସର୍ବ ବସ୍ତୁପ୍ରଦ, ମା ଲକ୍ଷ୍ମୀଙ୍କର ଇଶ୍ୱର ସେହି ପ୍ରଭୁ ଜଗନ୍ନାଥ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ।୨୫।

ଚଉଦ ବ୍ରହ୍ମାଣ୍ଡ ନିର୍ମାତା । ମଧୁଦୈତ୍ୟର ପ୍ରାଣହର୍ତ୍ତା ॥୨୫/୧॥
ହିରଣ୍ୟ କଶିପୁ ଦଇତ । ପ୍ରଚଣ୍ଡ ଉଗ୍ର ଯେ ଅତ୍ୟନ୍ତ ॥୨୫/୨॥
ନଖ ଆଘାତେ ତାକୁ ମାରି । ନରସିଂହ ରୂପକୁ ଧରି ॥୨୫/୩॥
ଦେବେ ହୋଇଣ ଆନନ୍ଦିତ । ପ୍ରଶଂସା କଲେ ଅପ୍ରମିତ ॥୨୫/୪॥
ମସ୍ତକେ ଶିଖୀପୁଚ୍ଛ ଯା'ର । ସେ ପ୍ରଭୁ ମୋର ବଳିଆର ॥୨୫/୫॥
ଶରୀରୁ ନିର୍ଗତ ସୁଗନ୍ଧ । ଭକତେ କରି ଦିଏ ଅନ୍ଧ ॥୨୫/୬॥
ଲୀଳା ନିମନ୍ତେ ନୀଳାଦ୍ରୀଶ । କମଳା ଶରୀରର ଅଂଶ ॥୨୫/୭॥
ସାଗର କନ୍ୟା ସାଥେ ଧରି । କରନ୍ତି ଲୀଳା ନରହରି ॥୨୫/୮॥
ସକଳ ଦେଇ ପାରେ ଯିଏ । ମହାଲକ୍ଷ୍ମୀଙ୍କ ପତି ସିଏ ॥୨୫/୯॥
ସେ ପ୍ରଭୁ ଜଗତରନାଥ । ରଖନ୍ତୁ ନ କରି ଅନାଥ ॥୨୫/୧୦॥
ଅଧମ ଜନେ କୃପା କରୁ । କଳି କଲୁଷରୁ ଉଦ୍ଧରୁ ॥୨୫/୧୧॥
ଆରତ ତ୍ରାଣ ଭଗବାନ । ପାଦେ ତା ରହୁ ମୋର ମନ ॥୨୫/୧୨॥

ଶ୍ରୀମଦ୍ ଗୌରାମ୍ବରାଢ଼୍ୟରରୁଚିରପୟୋରାଶିଶିତ୍ୟଙ୍ଗଲକ୍ଷ୍ମୀ
ଲକ୍ଷ୍ମୀଶେନାଦୃତାଙ୍ଗସ୍ଫୁଟତମସୁମନଃ ସଂଗତି-ବାଂନତାଂଘ୍ରିଃ ।
ବ୍ରହ୍ମାନନ୍ଦୈକଭୂମିର୍ଭ୍ରମଶମନପଟୁଃ ସ୍ୱାଶ୍ରିତାନାମବିଦ୍ୟାଂ
ଭିଦ୍ୟାଦସ୍ଥୂଳଦେହାହିତସକଳଜଗତ୍‌ହୀରମେୟସ୍ଥିତିର୍ନଃ ।।୨୬।

ପ୍ରଭୁ ଶ୍ରୀଜଗନ୍ନାଥ ଯିଏ ଶୋଭିତ ପୀତବସନରେ ସୁନ୍ଦର ଦେଖାଯାଉ ଅଛନ୍ତି, ଯାହାଙ୍କ ଶରୀରକାନ୍ତି ସମୁଦ୍ର ପରି ନୀଳ, ଯାହାଙ୍କୁ ଲକ୍ଷ୍ମୀ, ଶିବ ଓ ସୂର୍ଯ୍ୟ ଆଦର କରନ୍ତି, ଯାହାଙ୍କଠାରେ ଦେବତାମାନଙ୍କର ମିଳନ ହୋଇଥାଏ, ସରସ୍ୱତୀ ଯାହାଙ୍କର ଚରଣ ଦୁଇଟିକୁ ପ୍ରଣାମ କରନ୍ତି, ଭକ୍ତମାନଙ୍କର ଅଜ୍ଞାନ ନାଶ କରିବା ଦିଗରେ ଯେ ଅତି ଦକ୍ଷ,ଯିଏ ବ୍ରହ୍ମାନନ୍ଦର ସ୍ଥାନ, ସୂକ୍ଷ୍ମ ଦେହରେ ସମସ୍ତ ଜଗତକୁ ଯେ ରଖି ପାରିଛନ୍ତି, ପଣ୍ଡିତମାନେ ହିଁ ଯାହାଙ୍କର ଅବସ୍ଥିତି ସ୍ଥିରକରିପାରନ୍ତି,ସେହି ପ୍ରଭୁ ଶ୍ରୀଜଗନ୍ନାଥ ଆମ୍ଭମାନଙ୍କର ମାୟା ଛେଦନ କରନ୍ତୁ ।।୨୬।

| | | |
|---|---|---|
| ପୀତ ବସନେ ଯେ ଶୋଭିତ । | ତୁରିତେ ଛେଦନ୍ତି ଆରତ | ।।୨୬।୧।। |
| ଦିଶନ୍ତି କେଡେ ମନୋହର । | ତ୍ରିଭଙ୍ଗୀ ଠାଣି ତା' ସୁନ୍ଦର | ।।୨୬।୨।। |
| ଶରୀର କାନ୍ତିଟି ଯାହାର । | ସୁନୀଳ ମହୋଦଧି ନୀର | ।।୨୬।୩।। |
| ପୂଜନ୍ତି ପଦ୍ମା ରବି ଶିବ । | ବସନ୍ତି ଦେହେ ସର୍ବ ଦେବ | ।।୨୬।୪।। |
| ବୀଣାପାଣି ଦୁଇ ଚରଣ । | ଯାହାର କରନ୍ତି ବନ୍ଦନ | ।।୨୬।୫।। |
| ଭକ୍ତ ଅଜ୍ଞାନ ଅନ୍ଧକାର । | ନାଶନେ ଯିଏ ଧୁରନ୍ଧର | ।।୨୬।୬।। |
| ସୂକ୍ଷ୍ମଦେହେ ସାରା ଜଗତ । | ରହି ଯେ କରୁଛି ଆୟତ | ।।୨୬।୭।। |
| ପଣ୍ଡିତେ ଯାର ଅବସ୍ଥିତି । | ପାରନ୍ତି ଅତି କଷ୍ଟେ ଚିନ୍ତି | ।।୨୬।୮।। |
| ସେ ପ୍ରଭୁ ବ୍ରହ୍ମାନନ୍ଦ ସ୍ଥାନ । | କରନ୍ତୁ ମୋ ମାୟା ଛେଦନ | ।।୨୬।୯।। |

ହସ୍ତୋଦ୍ୟତ୍ପୁଷ୍କରଶ୍ରୀଃ ଶ୍ରୁତିଶିଖରଦ୍ରୁତୋନ୍ମତ୍ତଚିତ୍ତାଳିଲେଖୋ-
ଽଳଂକର୍ତ୍ତା କ୍ଷାମମଧ୍ୟସ୍ତ୍ରିପୁରହରତନୁ ଦକ୍ଷପକ୍ଷସ୍ୟ ରକ୍ଷ୍ୟାତ୍ ।
ସଦ୍ୟୋଽବିଦ୍ୟାନ୍ଧକାରାପୁରଶୁଧରପୁରସ୍କାର୍ଯ୍ୟଦୁର୍ବାର୍ଯ୍ୟବୀର୍ଯ୍ୟୋ-
ଦେବଃ ଶ୍ରୀପାର୍ବତୀବାଚିଧ୍ଵିବିତତଯଶାଃ ସ୍ୱର୍ଗବର୍ଗାଗ୍ରପୂଜ୍ୟଃ । ।୨୭।

ଦେବ ଶ୍ରୀଜଗନ୍ନାଥ ଅଜ୍ଞାନ ଅନ୍ଧକାରରୁ ଅତିଶୀଘ୍ର ଉଦ୍ଧାର କରନ୍ତୁ । ସେ ସ୍ୱର୍ଗରେ ଥିବା ଇନ୍ଦ୍ରାଦି ସମସ୍ତଙ୍କର ପୂଜ୍ୟ ଅଟନ୍ତି । ତାଙ୍କର କୀର୍ତ୍ତି ଲକ୍ଷ୍ମୀ, ପାର୍ବତୀ, ସରସ୍ୱତୀ ଓ ବ୍ରହ୍ମାଙ୍କ ଦ୍ୱାରା ବିସ୍ତାରିତ ହୋଇଅଛି । ତାଙ୍କୁ ପରଶୁଧାରୀ ଶିବ ପୂଜା କରନ୍ତି ଏବଂ ତାଙ୍କର ପରାକ୍ରମ ଦୁର୍ଦ୍ଧର୍ଷ । ତାଙ୍କର କଟୀ ଅତି କ୍ଷୀଣ ଏବଂ ସେ ଶିବଙ୍କ ଶରୀରର ଦକ୍ଷିଣ ଭାଗ ଅଳଙ୍କୃତ କରିଥାନ୍ତି । ତାଙ୍କ ହାତରେ ପଦ୍ମ ଅଛି । ଏବଂ ତଦ୍ୱାରା ସେ ଶୋଭିତ । ଉନ୍ମତ୍ତ ନାସ୍ତିକମାନଙ୍କର ଲେଖାଗୁଡ଼ିକୁ ସେ ବେଦର ଶ୍ରେଷ୍ଠଭାଗ ଉପନିଷଦ ଦ୍ୱାରା ଖଣ୍ଡିତ କରିଅଛନ୍ତି । ।୨୭।

ସ୍ୱର୍ଗରେ ଇନ୍ଦ୍ର ଆଦି ଦେବ । ପୂଜନ୍ତି ଯା'ର ପଦ୍ମ ପାଦ ।।୨୭/୧।।
ବ୍ରହ୍ମା ପାର୍ବତୀ ସରସ୍ୱତୀ । କମଳା କରନ୍ତି ଯା' ସ୍ତୁତି ।।୨୭/୨।।
ପରଶୁଧାରୀ ସଦାଶିବ । ସେବନ୍ତି ସଦା ଯା'ର ପାଦ ।।୨୭/୩।।
ଦୁର୍ଦ୍ଧର୍ଷ ଯା'ର ପରାକ୍ରମ । ସଚରାଚରର ପ୍ରଣମ୍ୟ ।।୨୭/୪।।
କଟି ଯାହାର କ୍ଷୀଣ ଅତି । ଶିବଙ୍କ ଦକ୍ଷିଣେ ଶୋଭନ୍ତି ।।୨୭/୫।।
ସ୍ୱରୂପ ତାଙ୍କ ହରିହର । ଅଭକ୍ତେ ତତ୍ତ୍ୱ ଅଗୋଚର ।।୨୭/୬।।
ହସ୍ତେ କମଳ ଶୋଭା ପାଏ । କମଳା ରମଣଟି ସିଏ ।।୨୭/୭।।
ଉନ୍ମତ୍ତ ନାସ୍ତିକ ବଚନ । ବେଦ ଶେଷଭାଗେ ଖଣ୍ଡିଣ ।।୨୭/୮।।
ବେଦରେ ଯିଏ ରକ୍ଷାକଲେ । ବେଦ ଶ୍ରେଷ୍ଠତ୍ୱ ପୁଷ୍ଟି କଲେ ।।୨୭/୯।।
ଶ୍ରୀଜଗନ୍ନାଥ ମେରୁବତ । ବସିଛି ନୀଳ ପରବତ ।।୨୭/୧୦।।
ବେଦ ତତ୍ତ୍ୱରେ ଗଢ଼ା ସେଇ । ଅଙ୍ଗକ୍ଷେ ଅପୂର୍ଣ୍ଣ ଦିଶଇ ।।୨୭/୧୧।।
ପୂର୍ଣ୍ଣ ବ୍ରହ୍ମ ମୋ ପ୍ରଭୁ ସେହି । ପାଦେ ନମୁଛି ତା'ର ମୁହିଁ ।।୨୭/୧୨।।
ହେ ଦେବ ଦେବ କଳାମୁଖ । ଅଜ୍ଞାନ ଅନ୍ଧକାରୁ ରଖ ।।୨୭/୧୩।।

ଛାୟାକାନ୍ତଃ କୃତାନ୍ତାର୍ଚ୍ଚିତଚରଣଯୁଗଃ ପାଣିରାଜତ୍ ସରୋଜଃ
ସ୍ୱାଗ୍ରୋଦ୍ୟଦ୍‌ବୈନତୟୋରଜନିଚରସୁଖୋଚ୍ଛ୍ରୟବିଚ୍ଛେଦଦକ୍ଷଃ ।
ସ୍ୱଚ୍ଛାନନ୍ତାଙ୍କଲୀଳଃ କ୍ଷୟିତତମତମାଃ ସର୍ବତେଜୋଽଭିଭାବୀ
କାଳିନ୍ଦ୍ୟାନନ୍ଦକନ୍ଦଃ ପୟମୁଦିତକମଳଃ ପାତୁ ପଙ୍କାଦ୍ଧରିର୍ନଃ ।୨୮।

ଶ୍ରୀଜଗନ୍ନାଥ ପାପରୁ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ସେ ଲକ୍ଷ୍ମୀଙ୍କୁ ଆନନ୍ଦିତ କରାଇଥାନ୍ତି । ଯମୁନା ନଦୀକୁ ସେ ଅନେକ ଆନନ୍ଦ ଦେଇ ଅଛନ୍ତି । ସମସ୍ତ ତେଜଃ ପୁଞ୍ଜକୁ ସେ ଦବାଇ ଦେଇଥାନ୍ତି । ସେ ଅଜ୍ଞାନକୁ ନାଶ କରନ୍ତି । ଶୁକ୍ଳ ଅନନ୍ତଙ୍କର କୋଳରେ ସେ କ୍ରୀଡ଼ା କରିଥାନ୍ତି । ତାଙ୍କର ସାମନାରେ ଗରୁଡ଼ ବରାବର ବିରାଜିତ ଥାନ୍ତି । ରାକ୍ଷସମାନଙ୍କର ସମସ୍ତ ସୁଖ ନାଶ କରିବାରେ ସେ ଅତି ଦକ୍ଷ । ଯମ ସ୍ୱୟଂ ତାଙ୍କର ଚରଣ ସେବା କରନ୍ତି । ତାଙ୍କର ହାତରେ ପଦ୍ମ ଶୋଭା ପାଉଥାଏ । ସେ ଦେଖିବାକୁ ଛାୟା ପରି କମନୀୟକଳା ଅଟନ୍ତି । ।୨୮।

ପିତା ଯା' ସାଗର ଦେବତା । ତାହାର ଯେ ଆନନ୍ଦଦାତା ॥୨୮/୧॥
ସେ ପ୍ରଭୁ ଯମୁନାର ତୀରେ । ସୁଖ ଦେଇଛି ଅକାତରେ ॥୨୮/୨॥
ରହିଛି ଯେତେ ତେଜପୁଞ୍ଜ । ତା ଗର୍ବ ଯେ କରିଛି ଗଞ୍ଜ ॥୨୮/୩॥
ଅଜ୍ଞାନ ଅନ୍ଧକାର ହାରି । ଅନନ୍ତକୋଳେ ସେହି ହରି ॥୨୮/୪॥
ଯୋଗ ନିଦ୍ରାରେ ଥାଇ ଶୋଇ । ଆରତ ଡ଼ାକକୁ ଶୁଣଇ ॥୨୮/୫॥
ଆଗରେ ଗରୁଡ଼ ତାଙ୍କର । ବିରାଜିଥାନ୍ତି ବରାବର ॥୨୮/୬॥
ରାକ୍ଷସମାନଙ୍କର ସୁଖ । ନାଶନେ ଯିଏ ଅତି ଦକ୍ଷ ॥୨୮/୭॥
କରେ କମଳ ପାଏ ଶୋଭା । ଶମନ କରେ ପାଦ ସେବା ॥୨୮/୮॥
ଛାୟା ପରାୟେ କମନୀୟ । ଶ୍ରୀମନ୍ଦିର ଯା'ର ଆଳୟ ॥୨୮/୯॥
ସେହି ମୋ ହୃଦୟ ଚନ୍ଦନ । ତା ପାଦେ ଥାଉ ମୋର ମନ ॥୨୮/୧୦॥
ପାପ ପ୍ରଭାବୁ ରଖୁ ମୋତେ । ପ୍ରାର୍ଥନା କରେ ତା ଅଗ୍ରତେ ॥୨୮/୧୧॥

ପଦ୍ମାନନ୍ଦୈକସଦ୍ମାମୃତନିଧିରବନୀନନ୍ଦନଶ୍ଚନ୍ଦ୍ରବଂଶୋ-
ତ୍ତଂସଃ ସ୍ୱର୍ଗେଶବର୍ଗେଡ଼ିତଚରଣଯୁଗଃ ସତ୍କବିଦ୍ୱାଶ୍ରୟଶ୍ଚ ।
ପତ୍ରୀଭୂତୋରୁପତ୍ରୀ ଜନନୟନଚୟାଗୋଚରୋ ନୀଚକେତୁ-
ର୍ଜ୍ୟୋତିଷ୍ମାନଚ୍ୟୁତୋଽସ୍ମାନବତୁ ଭବଭୟାଦାଶୁବିଶ୍ୱଗ୍ରହାତ୍ମା ।୨୯।

ଜ୍ୟୋତିର୍ମୟ, ଅଚ୍ୟୁତ ଓ ବିଶ୍ୱରୂପକ ଗ୍ରହର ଆତ୍ମା ଶ୍ରୀଜଗନ୍ନାଥ ସଂସାର ଭୟରୁ ଶୀଘ୍ର ଆମ୍ଭମାନଙ୍କୁ ରକ୍ଷାକରନ୍ତୁ । ସେ ସତ କବିଦ୍ୱର ଆଶ୍ରୟ ହୋଇ ମଧ ଲୋକଚକ୍ଷୁର ଅଗୋଚର । ଗରୁଡ଼ ତାଙ୍କର ବାହନ । ନୀଚ ପାଷଣ୍ଡମାନଙ୍କର ସେ ଧୂମକେତୁ । ଇନ୍ଦ୍ରାଦି ଦେବତାମାନେ ତାଙ୍କର ପଦଦ୍ୱୟ ପୂଜା କରନ୍ତି । ଚନ୍ଦ୍ରବଂଶୀୟ ଯାଦବ ବଂଶର ସେ ଶିରୋଭୂଷଣ । ସେ ଚରାଚର ପୃଥିବୀର ଆନନ୍ଦ ଦାୟକ । ମୋକ୍ଷ ଅମୃତର ସେ ଆଶ୍ରୟସ୍ଥଳ । ଲକ୍ଷ୍ମୀଙ୍କର ସେ ଏକମାତ୍ର ଆନନ୍ଦ-ଗୃହ । ।୨୯।

ଲକ୍ଷ୍ମୀଙ୍କ ଆନନ୍ଦ ଆଳୟ । ସୁଧା ଯା ନେଇଛି ଆଶ୍ରୟ ॥୨୯/୧॥
ଯାଦବ କୁଳର ନାୟକ । ବ୍ରହ୍ମାଣ୍ଡ ଆନନ୍ଦ ଦାୟକ ॥୨୯/୨॥
ଦେବଙ୍କ ସହ ସୁନାଶିର । ଖଟଇ ଯାହାର ପୟର ॥୨୯/୩॥
ନୀଚ ପାଷାଣ୍ଡ ଆଦି ଯେତେ । ରହି ଅଛନ୍ତି ଏ ଜଗତେ ॥୨୯/୪॥
ସ୍ୱରୂପେ ଧୂମକେତୁ ତା'ର । ଦିଶନ୍ତି ତାଙ୍କୁ ବାରବାର ॥୨୯/୫॥
ଯା'ର ବାହନ ଖଗପତି । ଶ୍ରୀନୀଳାଚଳ ରାଣୀ ପତି ॥୨୯/୬॥
ସତ କବିଦ୍ୱର ଆଶ୍ରୟ । ବିରାଜେ ଭକତ ହୃଦୟ ॥୨୯/୭॥
ଲୋକ ଚକ୍ଷୁର ଅନ୍ତରାଳେ । ରହି ସଂସାରକୁ ଯେ ପାଳେ ॥୨୯/୮॥
ବିଶ୍ୱରୂପକ ଜ୍ୟୋତିର୍ମୟ । ଅଚ୍ୟୁତ ଯା'ର ନାହିଁ ଲୟ ॥୨୯/୯॥
ଗ୍ରହଙ୍କ ଆତ୍ମା ଜଗନ୍ନାଥ । ଅନାଥ ଲୋକଙ୍କର ନାଥ ॥୨୯/୧୦॥
ଫେଡୁ ଆମ ସଂସାର ଡ଼ର । ରଖୁ ଘଣ୍ଟ ଘୋଡ଼ାଇ ତା'ର ॥୨୯/୧୧॥
ଶରଣ ରକ୍ଷଣେ କେଶରୀ । ମୋ ପ୍ରଭୁ ନୀଳାଦ୍ରି ବିହାରୀ ॥୨୯/୧୨॥
ଅରକ୍ଷ ଜନଙ୍କର ନାଥ । ତା ପାଦେ ରହୁ ମୋର ମାଥ ॥୨୯/୧୩॥

ବନ୍ଦେ ବନ୍ଦାରୁବୃନ୍ଦାରକନିକରଶିଖାରତ୍ନନକ୍ଷତ୍ରରାଜୀ-
ରଜ୍ୟତ୍ପାଦାରବିନ୍ଦସ୍ଫୁଟନଖରବିଧୁଧ୍ୱସ୍ତଚେତସ୍ତମସ୍କମ୍ ।
କୋଟିକିଡ୍ରାଣ୍ଡଭାଣ୍ଡପ୍ରକଟଗୁଣଘଟୈଃ ସେବିତଂସ୍ୱାବତାରୈଃ
ଶ୍ରୀମଦ୍‌ଗୋବିନ୍ଦମିନ୍ଦୀବରରୁଚିରତନୁମିନ୍ଦିରାନନ୍ଦକନ୍ଦମ୍ ।୩୦।

ଶ୍ରୀଗୋବିନ୍ଦଙ୍କୁ ମୁଁ ପ୍ରଣାମ କରୁଅଛି । ପ୍ରଣାମ କରୁଥିବା ଦେବବୃନ୍ଦଙ୍କର ଶିଖାରେଥିବା ନକ୍ଷତ୍ର ରୂପକ ରତ୍ନ ସମୂହରେ ତାଙ୍କର ଚରଣ କମଳତେଜୋଦୀପ୍ତ ଦେଖାଯାଏ । ତାଙ୍କର ନଖଗୁଡ଼ିକ ଚନ୍ଦ୍ରପରି ଉଜ୍ଜ୍ୱଳ ହୋଇଥିବାରୁ ହୃଦୟାନ୍ଧକାରକୁ ନଷ୍ଟ କରିଦିଏ । କୋଟି ସଂଖ୍ୟକ ବ୍ରହ୍ମାଣ୍ଡରୂପକ ହାଣ୍ଡି ତାଙ୍କର ଗୁଣଗ୍ରାମ ପ୍ରକାଶ କରୁଅଛନ୍ତି । ସେ ନିଜର ଅବତାରମାନଙ୍କକର୍ତ୍ତୃକ ମଧ୍ୟ ପରିପୂଜିତ । ତାଙ୍କର ଦେହ ନୀଳକମଳ ପରି ମନୋହର ଏବଂ ସେ ଲକ୍ଷ୍ମୀଙ୍କର ଆନନ୍ଦର ଝରଣା । ।୩୦।

ଲକ୍ଷ୍ମୀଙ୍କ ଆନନ୍ଦ ଝରଣା । ନୀଳ କମଳ ମନଜିଣା ।।୩୦/୧।।
ନିଜ ଅବତାର କର୍ତ୍ତୃକ । ପୂଜିତ ଯିଏ ତିନି ଲୋକ ।।୩୦/୨।।
ହାଣ୍ଡି ଯେ ବ୍ରହ୍ମାଣ୍ଡ ରୂପକ । ଅଗଣନ କୋଟି ସଂଖ୍ୟକ ।।୩୦/୩।।
ଯାହାର ଗୁଣକୁ ପ୍ରକାଶ । କରୁ ଅଛନ୍ତି ଅହର୍ନିଶ ।।୩୦/୪।।
କରାଗ୍ରଜ ଯା' ଯେହ୍ନେ ଶଶୀ । ହୃଦୟ ଅନ୍ଧକାର ନାଶି ।।୩୦/୫।।
ଦେବତା ବୃନ୍ଦ ତା' ଚରଣ । ବନ୍ଦନ୍ତି ପ୍ରଣାମ କରିଣ ।।୩୦/୬।।
ଶିଖାରେ ତାଙ୍କ ଯେ ନକ୍ଷତ୍ର । ପରାୟେ ରତ୍ନ ବିରାଜିତ ।।୩୦/୭।।
ତା ତେଜେ ଚରଣ ଯାହାର । ତେଜୋଦୀପ୍ତ ଓ ମନୋହର ।।୩୦/୮।।
ଶ୍ରୀ ଗୋବିନ୍ଦ ସେ ଜଗନ୍ନାଥ । ଇନ୍ଦ୍ରିୟ ମାନଙ୍କର ନାଥ ।।୩୦/୯।।
ତା' ଠାରେ ଥାଉ ମନ ମୋର । ନମୁଛି ତାହାର ପୟର ।।୩୦/୧୦।।

ମୀନୋଽଲୀନୋ ନଦୀନୋଦର ଉଷିତରଷିବ୍ରାତ ଗୋତ୍ରାତରୀସ୍ଥଂ
ତ୍ରାତୁଂ ସତ୍ୟବ୍ରତଂ ବାତରଦିହ ସୁମହାହାର୍ଯ୍ୟସନ୍ଦୋହଦେହଃ ।
ବେଦୋଦ୍ଧାରାୟ ଯୋଽଦ୍ଧା ବ୍ୟଧିତବଧମଦଣ୍ଡୌରବୃତ୍ରାରିଶତ୍ରୋ-
ସ୍ତାଣଂ ତାପତ୍ରୟାନ୍ନଃ ତ୍ରିପୁରହର ପୁରସ୍କାରପାତ୍ରଂତନୋତୁ । ୩୧ ।

ମୀନ ଅବତାର ଧାରୀ ଭଗବାନ ଶ୍ରୀଜଗନ୍ନାଥ ତାପତ୍ରୟରୁ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ସେ ଶିବଙ୍କର ପୂଜା ପାତ୍ର । ବୃତ୍ରଶତ୍ରୁ ଇନ୍ଦ୍ରଙ୍କର ଶତ୍ରୁର (ଶଙ୍ଖାସୁରର) ସେ ବଧବିଧାନ କରିଥିଲେ । ଶଙ୍ଖାସୁର ଚୋର ଥିଲା । ତେଣୁ ବେଦ ଉଦ୍ଧାର କରିବା ନିମନ୍ତେ ସେ ନିଶ୍ଚିତ ଭାବରେ ତାର ବିନାଶ ସାଧନ କରିଥିଲେ । ତାଙ୍କର ଦେହ ଅତି ବଡ଼ ବଡ଼ ପର୍ବତ ସମୂହ ପରି ବିଶାଳ ଥିଲା । ତେଣୁ ସମୁଦ୍ର ଗର୍ଭରେ ଛପି ପାରିଲା ନାହିଁ । ତରୀ ରୂପକ ପୃଥିବୀରେ ଥିବା ଋଷିଗଣ-ମଧ୍ୟ-ଗତ ଦୁଃଖିତ ସତ୍ୟବ୍ରତଙ୍କୁ ଉଦ୍ଧାର କରିବା ନିମନ୍ତେ ସେ (ଅନ୍ୟ) ଅବତାର ମଧ୍ୟ ଗ୍ରହଣ କରିଥିଲେ । ।୩୧ ।

ନମସ୍ତେ ମତ୍ସ୍ୟ ଅବତାର । ନୀଳାଚଳରେ ତୋର ଘର ।।୩୧/୧।।
ନମସ୍ତେ ଶିବ ପୂଜାପାତ୍ର । ଉଦ୍ଧାରି ଅଛ ସତ୍ୟବ୍ରତ ।।୩୧/୨।।
ନମସ୍ତେ ମହା ବପୁଧର । ଦଣ୍ଡିଛ ଶଙ୍ଖାସୁର ଚୋର ।।୩୧/୩।।
ନମସ୍ତେ ବେଦ ଉଦ୍ଧାରକ । ନମସ୍ତେ ଜ୍ଞାନ ସଂରକ୍ଷକ ।।୩୧/୪।।
ବୃତ୍ର ଶତ୍ରୁ ଯେ ସୁନାଶିର । ତା ଶତ୍ରୁ ଚୋର ଶଙ୍ଖାସୁର ।।୩୧/୫।।
ତା ଦଣ୍ଡ ବିଧାନ ଯେ କରି । ତାରେ ପୂଜନ୍ତି ତ୍ରିପୁରାରି ।।୩୧/୬।।
ଗିରିକ୍ଷେତ୍ରରେ ତାର ଘର । ନମସ୍ତେ ମୀନ ଅବତାର ।।୩୧/୭।।
ଅତିକାୟ ଶରୀର ଧାରୀ । ଦିଶନ୍ତି ଯେହ୍ନେ ମହାଗିରି ।।୩୧/୮।।
ଶରୀରକୁ ଯା'ରସାଗର । ଲୁଚାଇବାରେ ଅଗଭୀର ।।୩୧/୯।।
ନମସ୍ତେ ମହା ତନୁଧର । ନମସ୍ତେ ଶ୍ରୀକ୍ଷେତ୍ର ଈଶ୍ୱର ।।୩୧/୧୦।।
ଚାରି ବେଦକୁ ଉଦ୍ଧରିଲ । ଯଶ ପତାକା ଉଡ଼ାଇଲ ।।୩୧/୧୧।।
ପୃଥିବୀ ରୂପକ ତରଣୀ । ସତ୍ୟବ୍ରତ ଓ ଋଷି ମୁନି ।।୩୧/୧୨।।
ଯା' ଆଶ୍ରୟରେ ସର୍ବେଥିଲେ । ତାରେ ପ୍ରଳୟେ ଉଦ୍ଧରିଲେ ।।୩୧/୧୩।।
ଧରି ଯେ ମୀନ ଅବତାର । ସେ ମୀନ ପଦେ ନମସ୍କାର ।।୩୧/୧୪।।
ଦୈହିକ ଦୈବିକ ଭୌତିକ । ତାପ ତ୍ରୟର ଯେ ନାଶକ ।।୩୧/୧୫।।
ମୀନ ରୂପୀ କାଳିଆ ସାଇଁ । ତା ପାଦେ ନମେ ନିତି ମୁହିଁ ।।୩୧/୧୬।।

କୂର୍ମୋଽଶର୍ମୋପନିର୍ମୋଚୟତୁ ରୟଭରଭ୍ରାନ୍ତମନ୍ଥସ୍ଥିରାଦ୍ରି-
ଭୂରିଗ୍ରାବାଗ୍ରସଂଘଟ୍ଟନଘଟିତମହାପୃଷ୍ଠକଣ୍ଡୂତିସୌଖ୍ୟଃ ।
ପଦ୍ମଙ୍କୋଚଚ୍ଛଳେନୋଚ୍ଛଳିତଚଳହୃଦାଂ ମୀଳନଂ ସ୍ୱାଶ୍ରିତେଭ୍ୟୋ-
ଽନର୍ଥେଭ୍ୟଃ ପ୍ରୋତ୍‌ଥିତାସ୍ୟେନ ଚ ପବନସମୁତ୍‌ଥାନମର୍ଥାପୟନ୍ନଃ ।୩୨ ।

କୂର୍ମରୂପୀ ଶ୍ରୀ ଜଗନ୍ନାଥ ଆମ୍ଭମାନଙ୍କର ଅମଙ୍ଗଳ ଦୂର କରନ୍ତୁ । ତାଙ୍କର ବିଶାଳ ପୃଷ୍ଠ ଦେଶରେ ମନ୍ଥନଦଣ୍ଡ ରୂପୀ ମନ୍ଦର ଗିରିର ଅତିଶୀଘ୍ର ଘୂର୍ଣ୍ଣନ ହେତୁ ଅନେକ ଗୁଡ଼ିଏ ପଥରର ଅଗ ଘଷି ହୋଇ ପୃଷ୍ଠକଣ୍ଡୁ ନିବାରିତ ହୋଇଥିଲା ଏବଂ ଏଥିରୁ ସେ ଅତ୍ୟନ୍ତ ସୁଖ ଉପଭୋଗ କରୁଥିଲେ । ସେ ନିଜେ ନିଜର ପାଦ ସଙ୍କୋଚ କରି ବିକ୍ଷିପ୍ତ ଲୋକମାନଙ୍କୁ ନିଜେ ଅର୍ଜିଥିବା ଅନର୍ଥରୁ ସଂକୁଚିତ ହୋଇଯିବାକୁ ଏବଂ ପାଟି ମେଲା କରିବା ଦ୍ୱାରା (ନିଜେ କୂର୍ମ)ପବିତ୍ର କାର୍ଯ୍ୟରେ ପ୍ରବୃତ୍ତ ହେବାକୁ କହୁଥିବା ଭଳି ମନେ ହେଉଛି । ।୩୨।

| | | | |
|---|---|---|---|
| ନମସ୍ତେ କୂର୍ମ ଅବତାର | । | ପୃଷ୍ଠେ ଧରି ଗିରି ମନ୍ଦର | ।।୩୨/୧।। |
| ସମୁଦ୍ର ମନ୍ଥନର ବେଳେ | । | ସ୍ଥିର ରଖିଲେ ଯିଏ ଜଳେ | ।।୩୨/୨।। |
| ମନ୍ଦରାଚଳର ଘର୍ଷଣ | । | ଯା' ପୃଷ୍ଠ କଣ୍ଡୁ ନିବାରଣ | ।।୩୨/୩।। |
| ଆନନ୍ଦ ଯା'ରେ ଦାନ କଲା | । | ସେ ପ୍ରଭୁ ସଂସାର ରଖିଲା | ।।୩୨/୪।। |
| ନମସ୍ତେ ପ୍ରଭୁ କୂର୍ମରୂପୀ | । | ସାରା ବ୍ରହ୍ମାଣ୍ଡେ ଅଛ ବ୍ୟାପୀ | ।।୩୨/୫।। |
| ପାଦକୁ କରି ସଂକୁଚିତ | । | ଜନେ ଯା'ର ବୁଦ୍ଧି ଭ୍ରମିତ | ।।୩୨/୬।। |
| ସତେ ଯେପରି ବୋଲୁଅଛ | । | ସଂସାରେ ଯେତେ ପାପୀ ଅଛ | ।।୩୨/୭।। |
| ଅକର୍ମ ଅନର୍ଥ ଯେତେକ | । | ଅର୍ଜୁ ଅଛ ଜୀବନ ଯାକ | ।।୩୨/୮।। |
| ତହିଁରୁ ମନକୁ ଫେରାଇ | । | ପାଦରେ ଦିଅ ତା' ଲଗାଇ | ।।୩୨/୯।। |
| ନମସ୍ତେ ବିଶାଳ ହୃଦୟ | । | ସଂସାର ସୁଖର ଆଳୟ | ।।୩୨/୧୦।। |
| ପବିତ୍ର କର୍ମରେ ପ୍ରବୃତ୍ତ | । | ନିନ୍ଦିତ କର୍ମରୁ ନିବୃତ୍ତ | ।।୩୨/୧୧।। |
| ବ୍ୟକ୍ତି ଉତ୍ତମ ଅଟେ ସେଇ | । | ବୁଦ୍ଧି ଯାହାର ସ୍ଥିର ଥାଇ | ।।୩୨/୧୨।। |
| ମୋ ପ୍ରଭୁ ବଳିଆର ଭୁଜ | । | ମନ ମୋହଇ ତାର ଧ୍ୱଜ | ।।୩୨/୧୩।। |
| ବିଜେ ଛନ୍ତି ଯେ ଶ୍ରୀମନ୍ଦିର | । | ତା ପାଦେ ପ୍ରଣତି ମୋହର | ।।୩୨/୧୪।। |

କୋଳଃ କୋଳଂ କୁଗୋଲଂ ଦଧଦଧିଜଳଧୀବାଧ ଉଦ୍ଧୃତ୍ୟ ଦନ୍ତ-
ପ୍ରାନ୍ତେଽଶାନ୍ତେ ଦୁରନ୍ତେ ପ୍ରଥମଦିତିସୁତେ ବୃଦ୍ଧଦୁର୍ଦ୍ଧର୍ଷଯୁଦ୍ଧୈଃ ।
ଦେୟାଦାୟାସହିନୋ ଦ୍ରୁହିଣହରିହୟାଦ୍ୟାଦିତେୟାର୍ହଣୀୟଃ-
ଶ୍ରେୟୋଦାମ୍ନାୟଗେୟକ୍ରତୁନିଚୟମୟାମେୟକାୟଃ ଶ୍ରିୟଂ ନଃ ।୩୩ ।

ବରାହରୂପୀ ଶ୍ରୀ ଜଗନ୍ନାଥ ଆମର ମଙ୍ଗଳ କରନ୍ତୁ । ସେ ଯଜ୍ଞମୟ ଓ ଅନନ୍ତ । ଶ୍ରେୟପ୍ରଦ ବେଦ ତାଙ୍କର କୀର୍ତ୍ତିଗାନ କରୁଛନ୍ତି । ବ୍ରହ୍ମା ଇନ୍ଦ୍ରପ୍ରଭୃତି ଦେବଗଣଙ୍କର ସେ ପୂଜ୍ୟ । ପ୍ରବଳ ଓ ଦୁର୍ଭେଦ୍ୟ ଯୁଦ୍ଧରେ ଦିତିଙ୍କର ପ୍ରଥମ ପୁତ୍ର ଦୁର୍ବୃତ୍ତ ହିରଣାକ୍ଷ ନଷ୍ଟ ହୁଅନ୍ତେ ସେ ବିନା ଆୟାସରେ ସମୁଦ୍ରରେ ନାବ ପରି ଦାନ୍ତ ଅଗ୍ରରେ ପୃଥିବୀକୁ ତଳୁ ଉଠାଇ ଧରିଥିଲେ । ।୩୩ ।

ନମଇଁ ବରାହ ଚରଣ । ବେଦ ଯା' କରେ କୀର୍ତ୍ତିଗାନ ।।୩୩/ ୧।।
ନମସ୍ତେ ପ୍ରଭୁ ଯଜ୍ଞମୟ । ନମସ୍ତେ ଅନନ୍ତ ଅକ୍ଷୟ ।।୩୩/ ୨।।
ନମସ୍ତେ ପ୍ରଭୁ ଶ୍ରେୟପଦ । ପଦ୍ମା ସଂଚାଳେ ଯା'ର ପଦ ।।୩୩/୩।।
ନମସ୍ତେ ହିରଣାକ୍ଷ ହନ୍ତା । ପାପ ନାଶନେ ବଳବନ୍ତା ।।୩୩/ ୪।।
ନମସ୍ତେ ବ୍ରହ୍ମା ଇନ୍ଦ୍ର ପୂଜ୍ୟ । ଭକତେ ଦିଅ ଧୃତି ଧୈର୍ଯ୍ୟ ।।୩୩/ ୫।।
ନମସ୍ତେ ପୃଥୀ ଉଦ୍ଧାରକ । ଚଉଦ ବ୍ରହ୍ମାଣ୍ଡ ପାଳକ ।।୩୩/ ୬।।
ନମସ୍ତେ ପ୍ରଭୁ ଦନ୍ତ ଧାରୀ । ବିଜେ କରିଛ ନୀଳଗିରି ।।୩୩/ ୭।।
ଦନ୍ତେ ପୃଥିବୀ ଟେକିଧରି । ରକ୍ଷା କରିଛ ବେଦ ଚାରି ।।୩୩/ ୮।।
ନମସ୍ତେ ବରାହ ସ୍ୱରୂପୀ । ସକଳ ଘଟେ ଅଛ ବ୍ୟାପୀ ।।୩୩/ ୯।।
ନମୋ ବରାହ ଜଗନ୍ନାଥ । ତୋର ଚରଣେ ମୋର ମାଥ ।।୩୩/ ୧୦।।



ଅଂଘଃସଂଘଂ ନୃସିଂହୋ ଭବତୁ ଭବହରୋଽହ୍ନାୟ ସଂହର୍ତ୍ତୁ ମର୍ହୋ-
ଗର୍ହନ୍ନିର୍ହ୍ରାଦବୁନ୍ଦୈଃ ପ୍ରଳୟଜଳଧର ଧ୍ୱାନଧାରାସମୃଦ୍ଧିମ୍ ।
ଅକ୍ଷାନ୍ତ ସ୍ୱୀୟଭକ୍ତାକ୍ଷତିରମରପରାଧକ୍ଷବକ୍ଷଃ କବାଟ-
କ୍ଷୋଭପ୍ରକ୍ଷର୍ଯ୍ୟମାଣକ୍ଷତଜଭୃତନଖୋ ଲକ୍ଷ୍ୟ ଲକ୍ଷ୍ମୀକବକ୍ଷାଃ ।୩୪ ।

ସଂସାର ନାଶକ(ଜନ୍ମ ଓ ମୃତ୍ୟୁ ନାଶକ) ନୃସିଂହ ରୂପୀ ଶ୍ରୀଜଗନ୍ନାଥ ଶୀଘ୍ର ପାପ ସମୂହ ନାଶ କରିବାରେ ଯତ୍ନ କରନ୍ତୁ(ଯୋଗ୍ୟହୁଅନ୍ତୁ) । ତାଙ୍କର ଛାତିରେ ଲକ୍ଷ୍ମୀ ରହିଛନ୍ତି । ସେ ଭକ୍ତମାନଙ୍କର କ୍ଷତିକୁ ସହି ପାରନ୍ତି ନାହିଁ । ଦୈତ୍ୟରାଜ ହିରଣ୍ୟକଶିପୁଙ୍କର କବାଟ ରୂପକ ବକ୍ଷକୁ ସେ ଚିରି ଦେବାବେଳେ ସେଥିରୁ ବାହାରୁ ଥିବା (ବକ୍ଷରୁ) ରକ୍ତରେ ତାଙ୍କର ନଖଗୁଡ଼ିକ (ନଖରନ୍ଧ୍ର) ପୂରି ଯାଇଥିଲା । ଠିକ୍ ଏତିକି ବେଳେ ସେ ଯେଉଁ ଘୋର ଗର୍ଜନ କରିଥିଲେ ତଦ୍ୱାରା ପ୍ରଳୟକାଳୀନ ମେଘ ଗର୍ଜନକୁ ତୁଚ୍ଛ କରି ଦେଇଥିଲେ । ।୩୪।

| | | | |
|---|---|---|---|
| ନମଇଁ ନୃସିଂହାବତାର | । | ଅନନ୍ତ କୃପା ପାରାବାର | ।।୩୪/୧।। |
| ନମସ୍ତେ ନୃସିଂହ ଶ୍ରୀପତି | । | ଧରିଛ ଲକ୍ଷ୍ମୀ ନିଜ ଛାତି | ।।୩୪/୨।। |
| ନମସ୍ତେ ନୃସିଂହ ଭୀଷଣ | । | ସହେନା ଭକତ କଷଣ | ।।୩୪/୩।। |
| ନମୋ ନୃସିଂହ ଉଗ୍ରବୀର | । | ହିରଣ୍ୟକଶିପୁ ଉଦର | ।।୩୪/୪।। |
| ନଖରେ ଚିରି ଅନ୍ତନାଡ଼ି | । | ନାଶିଲ ବାହାରକୁ ଭିଡ଼ି | ।।୩୪/୫।। |
| ନମୋ ମହାବିଷ୍ଣୁ ନୃସିଂହ | । | କମ୍ପନ୍ତି ଗର୍ଜନେ ଯା' ଗ୍ରହ | ।।୩୪/୬।। |
| ପ୍ରଳୟ କାଳରେ ବଉଦ | । | କରଇ ଘଡ଼ଘଡ଼ି ଶବ୍ଦ | ।।୩୪/୭।। |
| ତା ତହୁଁ ବଳି ତୁମ ରଡ଼ି | । | ବ୍ରହ୍ମାଣ୍ଡେ ବୁରି ଗଲା ପଡ଼ି | ।।୩୪/୮।। |
| ନମସ୍ତେ ସଂସାର ତାରକ | । | ଭକତ ଭୟ ବିଧ୍ୱଂଶକ | ।।୩୪/୯।। |
| ନୃସିଂହ ରୂପୀ ଜଗନ୍ନାଥ | । | ଅନାଥ ଲୋକଙ୍କର ନାଥ | ।।୩୪/୧୦।। |

ଖର୍ବୀକୁର୍ବୀତ ଦର୍ବୀକରଭୁବନକଗୀର୍ବାଣବର୍ଗାଲୟୋର୍ବୀ-
ଗର୍ଗାନର୍ବାକ୍ସୁପର୍ବାର୍ଯ୍ୟବନିଧବମହାସଂପଦଂ ଲୁଂପମାନଃ ।
ବ୍ୟାପଦ୍ଧ୍ୟାପଚ୍ଚୟଂ ପତ୍ତ୍ରିତୟରୟଭରାଦର୍ଥନାବ୍ୟାଜଖର୍ବଃ-
ସର୍ବଂ ଶବାଂଦିସେବ୍ୟଃ ସ୍ରବଦମରଧୁନୀନୀରପନ୍ନୀରଜୋ ଯଃ ।୩୫ ।

ବାମନ ରୂପୀ ଶ୍ରୀଜଗନ୍ନାଥ ଆମର ବିପଦ ସମୂହ ଖଣ୍ଡନ କରନ୍ତୁ । ସେ ଶିବ ପ୍ରଭୃତି ଦେବଗଣଙ୍କର ସେବ୍ୟ । ତାଙ୍କର ପାଦ ପଦ୍ମରୁ ଗଙ୍ଗାଜଳ ଝରୁଅଛି । ମାଗିବା ଛଳରେ ସେ ବାମନରୂପ ଧାରଣ କରିଥିଲେ । ଦୈତ୍ୟରାଜ (ବଳି)ଙ୍କର ବହୁ ସମ୍ପତ୍ତି ନାଶ କରି ତିନି ପାଦର ବେଗାଧିକ୍ୟକୁ ପାତାଳ, ଦେବାଳୟ, ସ୍ୱର୍ଗ ଓ ପୃଥିବୀର ଗର୍ବକୁ ସେ ଆକ୍ରମଣ କରି ନଷ୍ଟକରି ଦେଇଥିଲେ । ।୩୫।

| | | | |
|---|---|---|---|
| ନମସ୍ତେ ପ୍ରଭୁ ହେ ବାମନ | । | ସେବନ୍ତି ପାଦ ଦେବଗଣ | ।।୩୫/୧।। |
| ନମସ୍ତେ ସଦାଶିବ ସେବ୍ୟ | । | ଜନ୍ମ ତୁମର ଅଟେ ଦିବ୍ୟ | ।।୩୫/୨।। |
| ମାଗିବା ଛଳରେ ବାମନ | । | ରୂପକୁ କରିଲ ଧାରଣ | ।।୩୫/୩।। |
| ନମସ୍ତେ ବଳି ଗର୍ବ ନାଶି | । | ନମସ୍ତେ ପ୍ରଭୁ ଅବିନାଶି | ।।୩୫/୪।। |
| ତ୍ରିପାଦେ ମାଗିଲ ସଂସାର | । | ନାଶିଲ ବଳି ଅହଂକାର | ।।୩୫/୫।। |
| ନମସ୍ତେ ଅଜ୍ଞାନ ଅଇରି | । | ପାଦରୁ ବହେ ଗଙ୍ଗା ବାରି | ।।୩୫/୬।। |
| ନମସ୍ତେ ଯାଚଙ୍କ ବ୍ରାହ୍ମଣ | । | ମାଗି ନିଅ ଭକ୍ତ କଷଣ | ।।୩୫/୭।। |
| ନମୋ ଜଗନ୍ନାଥ ବାମନ | । | ରଥରେ କରିଲେ ଦର୍ଶନ | ।।୩୫/୮।। |
| ସମସ୍ତ ପାପ ହୁଏ ନାଶ | । | ଛିଣ୍ଡଇ ପୁର୍ନଜନ୍ମ ଫାଶ | ।।୩୫/୯।। |
| ତୁମେ ମୋ ହୃଦୟ ଚନ୍ଦନ | । | ତୋ ପାଦେ ଥାଉ ମୋର ମନ | ।।୩୫/୧୦।। |



**ଷଷ୍ଠଃ କ୍ଷ୍ମାପ୍ରେଷ୍ଠଗୋଷ୍ଠୀକୁଠଗଣଲୁଠନାକୁଣ୍ଠତେଜାଃ କୁଠାରଃ-**

**ଶ୍ରୀବୈକୁଣ୍ଠାବତାରଃ କଠିନରଣଧୁରାଦୃଷ୍ଟ ଷଷ୍ଠୀଶପୃଷ୍ଠଃ ।**

**ତିଷ୍ଠନ୍‌କଣ୍ଠୀରବାଭୋଽର୍ଜ୍ଜୁନସୁଭଟଘଟାଘୋରମାତଙ୍ଗଯୂଥେ**

**ଶ୍ରେଷ୍ଠଃ କଷ୍ଟାନି ନିଷ୍ଟେବୟତୁ ଭୃଗୁଭୁବାଂ ନୀଳକଣ୍ଠାଂଘ୍ରିନିଷ୍ଠଃ ।୩୬ଃ**

ଭୃଗୁବଂଶର ଶ୍ରେଷ୍ଠ ଶ୍ରୀ ଜଗନ୍ନାଥଙ୍କ ଷଷ୍ଠ ଅବତାର ଓ ବିଷ୍ଣୁଙ୍କ ଅଂଶଧର ପର୍ଶୁରାମ ସ୍ୱୟଂ ବୈକୁଣ୍ଠାବତାର ରୂପରେ ଆମର କଷ୍ଟ ନଷ୍ଟ କରନ୍ତୁ । ସେ ନୀଳକଣ୍ଠ ମହାଦେବଙ୍କର ଭକ୍ତ ଥିଲେ ଏବଂ ତାଙ୍କର ଅବସ୍ଥିତ ସିଂହପରି ଥିଲା । ସେତେବେଳେ ସେ କାର୍ତ୍ତବୀର୍ଯ୍ୟଙ୍କ ଯୋଦ୍ଧାମାନଙ୍କୁ ଗଜପରି ମନେ କରୁଥିଲେ । ନିଷ୍ଠୁରଭାବରେଯୁଦ୍ଧକରି ସେ କାର୍ତ୍ତବୀର୍ଯ୍ୟଙ୍କୁ ପରାଜିତ କରିଥିଲେ । ପୃଥିବୀ ପ୍ରିୟ ରାଜନ୍ୟ ମଣ୍ଡଳୀର ଗୋଷ୍ଠୀକୁ ବୃକ୍ଷରାଜିପରି ସେ ପରଶୁରେ କାଟି ଖଣ୍ଡଖଣ୍ଡକରି ଦେବାରେ ଆଦୌ କୁଣ୍ଠାବୋଧ କରିନଥିଲେ । ।୩୬।

| | | | |
|---|---|---|---|
| ନମସ୍ତେ ଭୃଗୁବଂଶ ନାଥ | । | ପରଶୁଧର ଜଗନ୍ନାଥ | ।।୩୬/ ୧।। |
| ନମୋ ପର୍ଶୁରାମାବତାର | । | ଧ୍ୟେୟ ଯା'ର ଶିବଶଙ୍କର | ।।୩୬/ ୨।। |
| ନମସ୍ତେ ପ୍ରଭୁ ଭୃଗୁପତି | । | ସିଂହ ପରାୟେ ଅବସ୍ଥିତି | ।।୩୬/୩।। |
| ନାଶିଲ କ୍ରୋଧେ କାର୍ତ୍ତବୀର୍ଯ୍ୟ | । | ଯୋଦ୍ଧାଙ୍କୁ ତାର ଭାବି ଗଜ | ।।୩୬/ ୪।। |
| ନମସ୍ତେ ପ୍ରଭୁ ପର୍ଶୁଧର | । | କ୍ଷତ୍ରୀ ନାଶିଲ ବାରବାର | ।।୩୬/ ୫।। |
| କାଟିଲ ଯେହ୍ନେ ବୃକ୍ଷରାଜି | । | ରାଜନ୍ୟ ବର୍ଗ ଗର୍ବଗଂଜି | ।।୩୬/ ୬।। |
| ନମସ୍ତେ କାର୍ତ୍ତବୀର୍ଯ୍ୟ ଜୟୀ | । | ଶାନ୍ତି କରିଛ ବିଶ୍ୱେ ସ୍ଥାୟୀ | ।।୩୬/ ୭।। |
| ନୀଳକଣ୍ଠ ସେ ମହାଦେବ | । | ତାଙ୍କ ଚରଣେ ତୁମ୍ଭ ଭାବ | ।।୩୬/ ୮।। |
| ନୀଳାଦ୍ରିନାଥ କଳାକର | । | ନମସ୍ତେ ଷଷ୍ଠ ଅବତାର | ।।୩୬/ ୯।। |
| ନମସ୍ତେ ଆଶ୍ରିତ ରକ୍ଷଣ | । | ଚରଣେ ଗଲି ମୁଁ ଶରଣ | ।।୩୬/ ୧୦।। |

ରାମଃ ଶାମାବ୍ଜଧାମା ଶମୟତୁ ସ ମମାଶର୍ମ ଘର୍ମାଂଶୁବଂଶୋ-
ତ୍ତଂସଃ ସଂସାରହିଂସାବହମହିମମହାୟୋଧିରୟୋଜନେତ୍ରଃ ।
ଶୌଣ୍ଡଷ୍ଷଣ୍ଡୀଶକାଣ୍ଡାସନବଳଦଳେନ ଦଣ୍ଡକାରଣ୍ୟଚାରୀ
ହାରୀବାରୀଶତାରୀ ସୁରପର ବିସର ପ୍ରାଣହାରୀଷୁଧାରୀ ।୩୭ ।

ରାମାବତାର ରୂପୀ ଶ୍ରୀଜଗନ୍ନାଥ ମୋର ଅମଙ୍ଗଳ ନାଶ କରନ୍ତୁ । ସେ ସୂର୍ଯ୍ୟବଂଶର ଭୂଷଣ ଏବଂ ତାଙ୍କ ଶରୀରର କାନ୍ତି ଶ୍ୟାମ କମଳ ପରିଥିଲା । ତାଙ୍କର ଆଖି ଦୁଇଟି ପଦ୍ମ ପରି ସୁନ୍ଦର । ସଂସାରରେ ହିଂସାବାହକ ଯେତେ ପ୍ରଭାବ ସେ ସବୁ ପାଇଁ ସେ ମହାସାଗର (ଭିତରେ ପୋତିଦେବାକୁ) ଥିଲେ । ଶିବଧନୁର ବଳକୁ ଦଳିଦେବା ନିମନ୍ତେ ସେ ବୀର ଥିଲେ । ସେ ଛାତିରେ ସର୍ବଦା ହାର ପିନ୍ଧାରେର ପକ୍ଷପାତୀ ଥିଲେ । ଦଣ୍ଡକାରଣ୍ୟ ସେ ବିଚରଣ କରିଛନ୍ତି ଏବଂ ମହାସମୁଦ୍ର ( ଭାରତ ମହାସାଗର) ପାର ହୋଇଛନ୍ତି । ଦେବଶତ୍ରୁ ରାବଣଙ୍କର ସେ ବିସର- ପ୍ରାହେର୍ତ୍ତା ଥିଲେ । (ରାବଣର ଉନ୍ନତ ପ୍ରାଣତାଙ୍କ ଯୋଗୁଁ ଗଲା) । ସେ ସବୁବେଳେ ଶର ବ୍ୟବହାର କରୁଥିଲେ । ।୩୭।

ନମସ୍ତେ ରାମ ଜଗନ୍ନାଥ । ସୂର୍ଯ୍ୟ ବଂଶ ଉନ୍ନତ ମାଥ ।।୩୭/ ୧।।
ନମସ୍ତେ ପ୍ରଭୁ ଶ୍ୟାମକାନ୍ତି । ନାମ ସ୍ମରଣେ ତୁଟେ ଭ୍ରାନ୍ତି ।।୩୭/ ୨।।
ନମସ୍ତେ ଶିବଧନୁ ଦଳା । ନୀଳାଦ୍ରୀଶ ତ୍ରିପଣ୍ଡ କଳା ।।୩୭/୩।।
ନମସ୍ତେ ରାବଣ ଅଇରି । ବାନ୍ଧିଣ ସେତୁ ତାରେ ମାରି ।।୩୭/୪।।
ନମସ୍ତେ କମଳ ଲୋଚନ । କାନ୍ଧେ ଶୋଭଇ ଶରାସନ ।।୩୭/୫।।
ନମୋ ଦଣ୍ଡକାରଣ୍ୟବାସୀ । ହିଂସା ବାହକ ଯେତେ ନାଶି ।।୩୭/୬।।
ଧରାର ଭାରା ଉଶ୍ୱାସିଛ । ଋଷିଙ୍କ ବିଶ୍ୱାସ ରଖିଛ ।।୩୭/୭।।
ନମସ୍ତେ ପ୍ରଭୁ ଧନୁର୍ଦ୍ଧାରୀ । ଭକତବନ୍ଧୁ ଦଇତାରି ।।୩୭/୮।।
ଶ୍ରୀଜଗନ୍ନାଥ ରାମରୂପେ । ଧରି ଲକ୍ଷ୍ମଣ ଭାଇ ସାଥେ ।।୩୭/ ୯।।
ସୁଗ୍ରୀବ ସଙ୍ଗେ ମିତ୍ର ହେଲ । ବିଭୀଷଣେ ଶରଣ ଦେଲ ।।୩୭/ ୧୦।।
ନମସ୍ତେ ଭକତ ବାନ୍ଧବ । ଶରଣ ରଖ ହେ ମାଧବ ।।୩୭/ ୧୧।।

ଉର୍ଜ୍ଜେନ୍ଦୁଜ୍ୟୋତିରୂର୍ଜ୍ଜସ୍ୱଲବିମଳହରାହାର୍ଯ୍ୟରୁରଜୈତ୍ରଗାତ୍ରଃ
ସଦ୍ୟଃ ପ୍ରୋଦ୍ୟଦ୍ଦିନେଶଭ୍ରମଦମଦଭରାଘୂର୍ଣ୍ଣିତାସ୍ୱୀର୍ଣ୍ଣନେତ୍ରଃ ।
ପ୍ରତ୍ୟଗ୍ରାମ୍ଭୋଦବୃନ୍ଦପ୍ରତିଭଟପଟଭୃଭୂରିଭାସ୍ୱଦ୍‌ବିଭୂଷୋ
ଭୂୟାଭୂଗୋଲଭାରୀ ଭବଭୟଭରଭିଭାନୁଭୂଭେଦନୋନଃ ।୩୮ ।

ବଳରାମରୂପୀ ଶ୍ରୀଜଗନ୍ନାଥ ଆମର ସଂସାର ଭୀତନାଶକ ହୁଅନ୍ତୁ । ସେ କାର୍ତ୍ତିକ-ପୂର୍ଣ୍ଣିମା ( ଶରତ ପୂର୍ଣ୍ଣିମା) ଜହ୍ନପରି ଜ୍ୟୋତିଷ୍ମାନ୍ । ତାଙ୍କ ଶରୀରର ଶୁକ୍ଳମା ଅତିଶୁଭ୍ର ଓ ସ୍ୱଚ୍ଛ ହୋଇ କୈଳାସର ଜ୍ୟୋତିକୁ ମଧ୍ୟ ପରାସ୍ତ କରୁଥିଲେ । ତାଙ୍କ ଆଖି ଦୁଇଟି ମଦଭରା ଏବଂ ଭ୍ରମଣଶୀଳ ଥିଲା । ସେ ଦୁଇଟିର ରଙ୍ଗ ବିସ୍ତୃତ ଓ ଲାଲଥିବାରୁ ଉଦୟକାଳୀନ ସୂର୍ଯ୍ୟର ଭ୍ରମ ଉତ୍ପାଦନ କରାଉଥିଲେ । ନୂତନ ମେଘ ସମୂହର ପ୍ରତିପକ୍ଷ ବସ୍ତ୍ର ନୀଳାମ୍ବର, ସେ ବ୍ୟବହାର କରୁଥିଲେ । ବହୁତ-ଗୁଡ଼ିଏ ସ୍ୱଚ୍ଛ ଭୂଷଣ ସେ ଧାରଣ କରୁଥିଲେ । ପୃଥିବୀ ଗୋଲକ ଭାର ସେ ଅକାତରରେ ବୋହି ପାରୁଥିଲେ । ।୩୮।

| | | | |
|---|---|---|---|
| ନମସ୍ତେ କାଳିଆ ଠାକୁର | । | ଧରିଲ ରୂପ ହଳଧର | ।।୩୮ / ୧।। |
| ମଦଭରା ଦୁଇଟି ଆଖି | । | ଦେଖିଲେ ଆଖି ଯାଏ ଲାଖି | ।।୩୮ / ୨।। |
| ଉଦୟ ରବି ପ୍ରାୟ ଦିଶେ | । | ଅପୂର୍ବ ଜ୍ୟୋତିକୁ ପ୍ରକାଶେ | ।।୩୮ /୩।। |
| ଭ୍ରମଣଶୀଳ ନେତ୍ର ଦୁଇ | । | ହରିଣୀ ନେତ୍ରକୁ ନିନ୍ଦଇ | ।।୩୮ /୪।। |
| ନମସ୍ତେ ପ୍ରଭୁ ବଳଦେବ | । | କାନ୍ତି ଜିଣଇ କାମଦେବ | ।।୩୮ /୫।। |
| ସୁନ୍ଦର ଦିଶେ ମୁଖ ଚନ୍ଦ୍ର | । | ଯେହ୍ନେ ଶରତ ପୂର୍ଣ୍ଣଚନ୍ଦ୍ର | ।।୩୮ /୬।। |
| ଶରୀର ବରନ ଧବଳ | । | ନିନ୍ଦଇ କୈଳାସ ଅଚଳ | ।।୩୮ /୭।। |
| ଅନେକ ସ୍ୱଚ୍ଛ ଆଭୂଷଣ | । | କରି ଅଛ ତୁମ୍ଭେ ଧାରଣ | ।।୩୮ /୮।। |
| ନମସ୍ତେ ରୋହିଣୀର ସୁତ | । | ନିଳାମ୍ବରରେ ଯେ ଶୋଭିତ | ।।୩୮ / ୯।। |
| ନବ ବାରିଦ ନିନ୍ଦେ ହେଲେ | । | ଜ୍ୟୋତିଷ୍ମାନ ତୁମ୍ଭେ ଶୟଳେ | ।।୩୮ / ୧୦।। |
| ଶ୍ରୀବଳରାମ ଜଗନ୍ନାଥ | । | ନମସ୍ତେ ନୀଳ ଅଦ୍ରି ନାଥ | ।।୩୮ / ୧୧।। |
| ନମସ୍ତେ ବ୍ରହ୍ମାଣ୍ଡ ଠାକୁର | । | ବହିଛ ପୃଥିବୀର ଭାର | ।।୩୮ / ୧୨।। |
| ନମସ୍ତେ ପ୍ରଭୁ ହଳଧର | । | ଫେଡ଼ ହେ ଆରତ ମୋହର | ।।୩୮ / ୧୩।। |

ଅଧାମଧାନ ବଦ୍ଧାଦରବିଧୁତଧୃତିର୍ଧ୍ୱସ୍ତ ଶୁଦ୍ଧାଧ୍ୱରାଧ୍ୱ-
ଶ୍ରଦ୍ଧଃକ୍ରୋଧାଦି ରୋଧାଦ୍ ବିଧିବହିତବଧା ସାଧୁତାସିଦ୍ଧବୋଧଃ ।
ଦଧ୍ୟାଦ୍ବୁଦ୍ଧଭିଧାନୋ ମଗଧ ଧରଣି ଭୂଲ୍ଲବ୍ଧଜନ୍ମାଧିଦେବୋ-
ବାଧାବ୍ଧ୍ୟୁଦ୍ଧାରଧୂର୍ଯ୍ୟାଂ ଧିୟମଧନଧନଂ ଧର୍ମଧାରାଂଧରନ୍ନଃ ।୩୯ ।

ବୁଦ୍ଧାବତାର ରୂପୀ ଶ୍ରୀଜଗନ୍ନାଥ ଆମର ବୁଦ୍ଧିକୁ ପୁଷ୍ଟ କରନ୍ତୁ । ସେ ଦରିଦ୍ରର ଧନ ଥିଲେ । ସେ ମଗଧଧରଣୀରେ କାଳଯାପନ କରିଥିଲେ । ବିପଦ ସମୂହରୁ ଉଦ୍ଧାର ପାଇବା ନିମନ୍ତେ ଉପଯୁକ୍ତ ଧର୍ମପ୍ରବାହ ସେ ସୃଷ୍ଟି କରି ଦେଇଗଲେ । ଆତ୍ମଚିନ୍ତାରେ ସେ ବଦ୍ଧାଦର ରହି କେବେହେଲେ ଧୃତି ( ଧୈର୍ଯ୍ୟ) ହରାଉ ନଥିଲେ । ବିଧିବିହିତ ପଶୁହତ୍ୟାକୁ ସେ ପ୍ରକାଶ୍ୟ ରେ ନିନ୍ଦା କରୁଥିଲେ । କାମ,କ୍ରୋଧ ଆଦି ଶତ୍ରୁମାନଙ୍କୁ ଦମନ କରିବାଠାରୁ ବୈଧହିଂସା ଯେ ଅପକର୍ଷ ସୂଚକ ତାହା ସେ (ଯୁକ୍ତିଦ୍ୱାରା) ଦେଖାଇ ଦେଇଥିଲେ । ।୩୯।

ନମସ୍ତେ ଜଗତ ଠାକୁର । ଧରିଛ ବୌଦ୍ଧ ଅବତାର ।।୩୯/ ୧।।
ନମସ୍ତେ ବୁଦ୍ଧ ଭଗବାନ । ନମସ୍ତେ ଦରିଦ୍ରର ଧନ ।।୩୯/ ୨।।
ନମସ୍ତେ ମଗଧ ନିବାସୀ । ନମସ୍ତେ ବିପଦ ବିଧ୍ୱଂସୀ ।।୩୯/୩।।
ନମସ୍ତେ ଧର୍ମ ପ୍ରତିଷ୍ଠାତା । ଧର୍ମ ପ୍ରବାହ ସୃଷ୍ଟି କର୍ତ୍ତା ।।୩୯/୪।।
ଆତ୍ମଚିନ୍ତାରେ ସଦା ଲୀନ । ନମସ୍ତେ ପ୍ରଭୁ ପଦ୍ମାସୀନ ।।୩୯/୫।।
ପଶୁହତ୍ୟା ବିଧିବିହିତ । ହିଂସା ନାମେ କଲ ଘୋଷିତ ।।୩୯/୬।।
ଦୃଢ଼ ହସ୍ତରେ ନିନ୍ଦା କରି । ଅହିଂସା ଅସ୍ତ୍ର ହାତେ ଧରି ।।୩୯/୭।।
ଅହିଂସା ମନ୍ତ୍ରରେ ମଣ୍ଡିତ । କରିଲ ଏ ସାରା ଜଗତ ।।୩୯/୮।।
ବଉଦ୍ଧ ଅବତାର ଧରି । ଶ୍ରୀକ୍ଷେତ୍ରେ ନୀଳାଦ୍ରି ବିହାରୀ ।।୩୯/ ୯।।
ବିଶ୍ୱଭାତୃତ୍ୱ ସମାନତା । ଜାତି ଧର୍ମ ବର୍ଣ୍ଣ ସମତା ।।୩୯/ ୧୦।।
ଲୋକରେ ଶିକ୍ଷା ଦେଉଅଛ । ନୀଳାଦ୍ରିରେ ବିଜେ କରିଛ ।।୩୯/ ୧୧।।
ନମସ୍ତେ ଅହିଂସା ସ୍ୱରୂପ । ବୁଦ୍ଧି ବଢ଼ାଇ ନାଶ ପାପ ।।୩୯/ ୧୨।।

ନିର୍ଧୂଳିଧୁମଧାରାଧରନିକରନଭୋମ୍ନବିଦ୍ୟୋତମାନ-
ଦ୍ୟୋତପ୍ରାଗ୍ଭାରଭାସ୍ୱତ୍ ଭ୍ରମକରକରଯୁଙ୍ମଣ୍ଡଳାଗ୍ରପ୍ରଚଣ୍ଡଃ ।
ସ୍ୱାଧାରାଧୀରଘୋରୋଙ୍କୁରତୁରଗଖୁରକ୍ଷୋଦତକ୍ଷୋଣିରେଣୁ-
ଛନ୍ନାଚ୍ଛାୟେଶ ଈଶୋଦିଶତୁ ଦଶମକୋ ମ୍ଳେଚ୍ଛବିଚ୍ଛେଦକୃଚ୍ଛମ୍ ।୪୦ ।

କଳ୍କି ଅବତାର ରୂପୀ ଶ୍ରୀ ଜଗନ୍ନାଥ ପ୍ରଭୁ ମଙ୍ଗଳ ବିଧାନ କରନ୍ତୁ । ସେ ଧର୍ମ ହୀନ ମ୍ଳେଚ୍ଛମାନଙ୍କର ସଂହାର କରିବେ । ଧୂଳିଧୂମହୀନ ମେଘମାଳରୁ ପୂରାପୂରି ମୁକ୍ତ ଆକାଶ ମଧ୍ୟରେ ଏହି ଦଶମାବତାର କଳକିଙ୍କର ପ୍ରକାଶ ହେବ । ତାଙ୍କର ଶରୀର ଉପର ଭାଗରେ ତେଜ ବିକୀରଣ କରି ହସ୍ତସ୍ଥ ତୀକ୍ଷ୍ଣ ଖଡ୍ଗ ସୂର୍ଯ୍ୟଙ୍କୁ ପରିଭ୍ରମଣ କରିବ ( ସେ ଖଡଗ୍ ବୁଲାଉଥିଲେ ।) ଏହି ଚିତ୍ର ବାସ୍ତବରେ ଭୟଙ୍କର । ତାଙ୍କର ବାହନ ଅଶ୍ୱ ଘୋର ଭୟଙ୍କର ତଥା ଚଞ୍ଚଳ ଥିବାରୁ ତାହାର ଖୁରାରେ ପୃଥିବୀ ଖୋଳିହୋଇ ଯାଉଥିବ ଏବଂ ସେଥିରୁ ଉଦ୍ଭୂତ ଧୂଳିରେ ସୂର୍ଯ୍ୟ ସ୍ୱୟଂ ଆଚ୍ଛାଦିତ ହୋଇଯିବେ । ।୪୦।

ନମସ୍ତେ କାଳିଆ ଠାକୁର । ଧରିବ କଳକୀ ଅବତାର ।।୪୦/୧।।
ନମସ୍ତେ ମ୍ଳେଚ୍ଛ ସଂହାରକ । ନମସ୍ତେ ଧର୍ମ ସଂରକ୍ଷକ ।।୪୦/୨।।
ନମସ୍ତେ ଦଶମାବତାର । ପ୍ରକାଶ ଆକାଶୁ ତୁମ୍ଭର ।।୪୦/୩।।
ନମସ୍ତେ ପ୍ରଭୁ ଖଡ୍ଗଧର । ଅପୂର୍ବ ରୂପ ତେଜଧର ।।୪୦/୪।।
ନମସ୍ତେ ଘୋଟକ ବାହନ । ଘୋର ବେଗେ ଯେ ଧାବମାନ ।।୪୦/୫।।
ତାହାର ଖୁରା ଆଘାତରେ । ଧୂମମଣ୍ଡଳ ଉଠେ ଖରେ ।।୪୦/୬।।
ନମସ୍ତେ ଭୟଙ୍କରରୂପୀ । ସୂର୍ଯ୍ୟ ଘୋଡ଼ାଏ ଊର୍ଦ୍ଧ୍ୱେ ବ୍ୟାପୀ ।।୪୦/୭।।
ନମସ୍ତେ କଳକୀ ଭଗବାନ । କରନ୍ତୁ ମଙ୍ଗଳ ବିଧାନ ।।୪୦/୮।।
ହେ ପ୍ରଭୁ କାଳିଆ ସାଆନ୍ତ । ତୁମ୍ଭର ନାହିଁ ଆଦିଅନ୍ତ ।।୪୦/୯।।
ଯୁଗକୁ ଯୁଗ ଏ ପ୍ରକାର । ଧରିଛ ଦଶ ଅବତାର ।।୪୦/୧୦।।
ନମସ୍ତେ ଅବତାର ଧାରୀ । ଶରଣ ମାଗୁଛି ତୋହରି ।।୪୦/୧୧।।
ଧର୍ମ ହୀନଙ୍କ କବଳରୁ । ମୋତେ ଉଦ୍ଧର କଳ୍ପତରୁ ।।୪୦/୧୧।।

ମତ୍ସ୍ୟାଦ୍ୟାକଲ୍କିରୂପଂ ଦଶବିଧତନୁଭାକ୍‌ସିଦ୍ଧସଂଖ୍ୟାମ୍ମୂର୍ତ୍ତି-
ର୍ଦ୍ୱାତ୍ରିଂଶଦ୍ ଗାତ୍ରଧର୍ତ୍ତା ଜଗଦୁପକୃତୟେ କ୍ଳୃପ୍ତନାନାବତାରଃ ।
ଭାଗାଂଶାଦ୍ୟୈର୍ବିଭେଦୈଃ ପରିଚରିତପଦଦ୍ୱନ୍ଦ୍ୱ ଇନ୍ଦ୍ରଶ୍ମକାନ୍ତିଃ-
କୃଷ୍ଣସ୍ତୃଷ୍ଣାନୃତାବ୍‌ଧେଃ ସୃଜତୁ ନୃଜନିଜାଦ୍‌ଦୁଷ୍କୃତାନ୍ନିଷ୍କୃତିଂ ମେ ।୪୧ ।

ଶ୍ରୀକୃଷ୍ଣ ରୂପୀ ଶ୍ରୀଜଗନ୍ନାଥ ଆଶାରୂପକ ମିଥ୍ୟାସାଗରରୁ ଏବଂ ମାନବ ଜନ୍ମ ହେବାରୁ ଯେଉଁ ସବୁ ପାପ ସବୁ କରିବାକୁ ପଡୁଛି, ସେଥିରୁ ମୋତେ ଉଦ୍ଧାର କରନ୍ତୁ । ଭକ୍ତଗଣ ତାଙ୍କର ଯୁଗଳ ପଦ ସେବା ବରାବର କରୁଥାନ୍ତି । ତାଙ୍କର ଶରୀରର କାନ୍ତି ଇନ୍ଦ୍ରନୀଳମଣି ପରି ନୀଳ । ସେ ଜଗତର ଉପକାର କରିବା ନିମନ୍ତେ ନିଜର ଅଂଶ ଓ ଭାଗ ପ୍ରଭୃତିକୁ ଦେଇ ମତ୍ସ୍ୟରୁ ଆରମ୍ଭ କରି କଳ୍କି ପର୍ଯ୍ୟନ୍ତ ଦଶ ଅବତାର, ଚବିଶ ଅବତାର ପୁଣି ବତିଶ ଅବତାର ଗ୍ରହଣ କରିଥିଲେ । ଆବଶ୍ୟକ ଦେଖି ସେ ଆହୁରି ଅନେକ ଅବତାର ମଧ୍ୟ ଗ୍ରହଣ କରିଛନ୍ତି ଓ କରିବେ । ।୪୧ ।

ନମଇଁ ଜଗନ୍ନାଥ ପାଦେ । ବ୍ରହ୍ମାଣ୍ଡ ମାପିଲେ ତ୍ରିପାଦେ ।।୪୧/୧।।
ଭକତେ ଯୁଗଳ ଚରଣ । ସେବା କରନ୍ତି ଅନୁକ୍ଷଣ ।।୪୧/୨।।
ଶରୀରର କାନ୍ତି ତାଙ୍କରି । ଇନ୍ଦ୍ର ନୀଳମଣି ଯେପରି ।।୪୧/୩।।
ଜଗତ ଉପକାର ପାଇଁ । ନିଜର ଅଂଶ ଭାଗ ନେଇ ।।୪୧/୪।।
ମତ୍ସ୍ୟରୁ କଳ୍କୀ ଆଦି ଦଶ । ଅବତାର ରୂପେ ପ୍ରକାଶ ।।୪୧/୫।।
ଜଗତ ଆବଶ୍ୟକ ମତେ । ରୂପ ଧରନ୍ତି ଏହି ମର୍ତ୍ତେ ।।୪୧/୬।।
ଚବିଶି ବତିଶି ସଂଖ୍ୟକ । ଅଥବା ତହିଁରୁ ଅଧିକ ।।୪୧/୭।।
ଚିକ୍କଣ କଳା ଜଗନ୍ନାଥ । ଅନାଥ ଜନଙ୍କର ନାଥ ।।୪୧/୮।।
ଆଶା ରୂପୀ ମିଥ୍ୟା ସାଗର । ଲହଡ଼ି ଯହିଁ ଭୟଙ୍କର ।।୪୧/୯।।
ତହିଁରୁ ପ୍ରଭୁ ରକ୍ଷାକର । ହେ ନୀଳାଚଳ କଳାକର ।।୪୧/୧୦।।
ମାନବ ଜନମ ପ୍ରାପତେ । ପାପ କରୁଛି ଯେତେ ଯେତେ ।।୪୧/୧୧।।
ଉଦ୍ଧାର କର ଭାବଗ୍ରାହୀ । ନମୁଛି ପାଦ ତଳେ ରହି ।।୪୧/୧୨।।
ଜଗନ୍ନାଥ କୃଷ୍ଣ ସ୍ୱରୂପ । ବିନାଶ ପାପର ପ୍ରତାପ ।।୪୧/୧୩।।
ଚରଣେ ପଶିଲି ଶରଣ । ମୋତେ ଉଦ୍ଧର ନାରାୟଣ ।।୪୧/୧୪।।

ଯାଲୀଳାଗୋକୁଳାନ୍ତର୍ମଧୁପୁର ରଚିତା ଯାଃ କୃତା ଦ୍ୱାରବତ୍ୟାଃ
କ୍ଷିତ୍ୟାଂ ନିତ୍ୟାବତାରୈଃପ୍ରତିଯୁଗମୁଚିତାଃ ସୂଚିତାଃ ପ୍ରାଙମୁନୀନ୍ଦ୍ରୈଃ ।
ତାସ୍ତାବିସ୍ତାରୟନ୍ ଯୋ ବସତି ଶିତଗିରୌ ବେଦବିଦ୍ୟୋଽବତାରୋ-
ନିତ୍ୟେ ଧାମ୍ନି ସ୍ୱନାମ୍ନି ସ୍ଫୁରତୁ ମୁରରିପୁଃ ସୋଽୟମନ୍ତଃସଦାନଃ ।୪୨ ।

ଶ୍ରୀ ଜଗନ୍ନାଥ ଅବତାରୀ ଅଟନ୍ତି । ସେ ବେଦଦ୍ୱାରା ଜଣାଯାଇପାରନ୍ତି । ସେ ମୁରାରୀ । ନିତ୍ୟଧାମ ବୈକୁଣ୍ଠରୂପୀ ନୀଳାଚଳରେ ସେ ବିଜେ କରିଛନ୍ତି । ଦ୍ୱାରକା, ଗୋକୁଳ ଓ ମଥୁରାରେ ସେ ଯେଉଁ ଲୀଳା ପ୍ରକଟ କରିଛନ୍ତି ଏବଂ ପ୍ରତିଯୁଗରେ ପୃଥିବୀରେ ନିତ୍ୟାବତାର ରୂପଧରି ସେ ଯାହାସବୁ କରିଛନ୍ତି ବର୍ତ୍ତମାନ ସେହି ମୁରାରୀ ନୀଳାଚଳରେ ରହି ସେହିସବୁ ଲୀଳାର ବିସ୍ତାର ଦିଗରେ ପ୍ରେରଣା ଦେଉଛନ୍ତି । ।୪୨ ।

ନମସ୍ତେ ପ୍ରଭୁ ଦଇତାରୀ । ଶ୍ରୀ ଜଗନ୍ନାଥ ଅବତାରୀ ॥୪୨/୧॥
ନମସ୍ତେ ନମସ୍ତେ ମୁରାରୀ । ନୀଳ ପରବତ ବିହାରୀ ॥୪୨/୨॥
ନିତ୍ୟଧାମ ସେ ନୀଳାଚଳ । ପୂରୁବ ସାଗରର କୂଳ ॥୪୨/୩॥
ତହିଁ ଅଛନ୍ତି ବିଜେ କରି । ଶ୍ରୀ କ୍ଷେତ୍ର ଧାମରକେଶରୀ ॥୪୨/୪॥
ମଥୁରା ଦ୍ୱାରକା ଗୋକୁଳେ । ପ୍ରତ୍ୟେକ ଯୁଗେ ଏ ଶୟଳେ ॥୪୨/୫॥
ବସିଣ ନୀଳାଦ୍ରି ଶିଖରେ । ସେ ସବୁ ଲୀଳାର ବିସ୍ତାରେ ॥୪୨/୬॥
ପ୍ରାଣୀଙ୍କୁ ଦେଉଛ ପ୍ରେରଣା । ଲୀଳା ତୁମ୍ଭର ମନ ଜିଣା ॥୪୨/୭॥
ଭକତ ଦୁଃଖ ନିବାରଣ । କରନ୍ତି ଅନାଦି କାରଣ ॥୪୨/୮॥
ବେଦ ମନ୍ତ୍ରରେ ତାରେ ଜାଣି । ନ ହେଲେ ଭ୍ରମୁ ଥାନ୍ତି ପ୍ରାଣୀ ॥୪୨/୯॥
ମୋ ଭ୍ରମ ପ୍ରଭୁ କର ଦୂର । ହେ ପ୍ରଭୁ କାଳିଆ ଠାକୁର ॥୪୨/୧୦॥
ଚରଣେ କରୁଛି ପ୍ରଣାମ । ମୋତେ ଉଦ୍ଧର ଘନଶ୍ୟାମ ॥୪୨/୧୧॥



ଯୋଽସୌ ସର୍ବତ୍ର ପୂର୍ଣ୍ଣୋଽପ୍ୟସିତଗିରିଦରୀକେଶରୀ ଯୋଽପ୍ୟରୂପଃ
ପଦ୍ମପ୍ରଦ୍ୟୁମ୍ନ ରୂପୋଽପ୍ୟଣୁ ରତନୁତନୂସଂଭୃତାଶେଷଲୋକଃ ।
ନିର୍ଷ୍ଟେଗୁଣ୍ୟୋଽପ୍ୟ ଗଣ୍ୟାମଳଗୁଣନିଳୟୋ ବାଙ୍ମନୋଽତୀତଧାମା-
ମାଦୃକ୍‌ଚର୍ମାକ୍ଷିଲକ୍ଷ୍ୟଃ ସ୍ଫୁରତୁ ମନସି ନଶ୍ଚିତ୍ରସିନ୍ଧୁର୍ମୁକୁନ୍ଦଃ । ୪୩ ।

ସେହି ମୁକନ୍ଦ ମୋଭଳି ଲୋକଙ୍କରଏହି ଚର୍ମଚକ୍ଷୁକୁ ଦେଖାଦିଅନ୍ତୁ । ସେ ବିଚିତ୍ରତାର ସାଗର ଅଟନ୍ତି । ମୋର ମନରେସେ ସବୁବେଳେ ପ୍ରକାଶିତହୁଅନ୍ତୁ । ସେ ଅବାଙ୍ ମନସ ଗୋଚର ଏବଂ ନିର୍ଗୁଣ ହେଲେ ମଧ୍ୟ ଅପରିମେୟ ନିର୍ମଳଗୁଣର ଆଶ୍ରୟ । ସେ ସୂକ୍ଷ୍ମ ହେଲେ ମଧ୍ୟ ତାଙ୍କର ମହାଶରୀର ମଧ୍ୟରେ ଅଶେଷଲୋକଙ୍କୁ (ଚଉଦ ଭୁବନ) ଧରି ରଖିଅଛନ୍ତି । ତାଙ୍କର କୌଣସି ରୂପ ନାହିଁ । ତଥାପି ସେ କୂର୍ମ, ପ୍ରଦ୍ୟୁମ୍ନ ଆଦି ଅନେକ ରୂପ ଧରି ଅଛନ୍ତି । ସର୍ବ ସମୟ ଓ ଦେଶରେ ପରିପୂର୍ଣ୍ଣ ଭାବରେ ବ୍ୟାପ୍ତଥିଲେ ମଧ୍ୟ ଅର୍ଥାତ ସେ ମହା ବିରାଟ ହେଲେ ହେଁ ନୀଳଗିରିର ଗୁହାରେ ସିଂହ ରୂପରେ ରହିଛନ୍ତି । ।୪୩।

| | | | |
|---|---|---|---|
| ନମସ୍ତେ ମୁକୁନ୍ଦ ମୁରାରି | । | ବିଜେ କରିଛ ନୀଳଗିରି | ॥୪୩/ ୧॥ |
| ନମସ୍ତେ ନୀଳାଦ୍ରି ଈଶ୍ୱର | । | ବିଚିତ୍ରତାର ତୁ ସାଗର | ॥୪୩/ ୨॥ |
| ନମସ୍ତେ ପ୍ରଭୁ ହେ ଅଚ୍ୟୁତ | । | ମୋ ମନେ ହୁଅ ପ୍ରକାଶିତ | ॥୪୩/୩॥ |
| ବାଣୀରେ ଯେ ଅବର୍ଣ୍ଣନୀୟ | । | ମନରେ ସେ ଅକଳ୍ପନୀୟ | ॥୪୩/ ୪॥ |
| ଗୁଣ ନିର୍ଗୁଣ ପରେ ସେହି | । | ନିର୍ମଳ ଗୁଣ ଆଶ୍ରେ ରହି | ॥୪୩/ ୫॥ |
| ତୋ ରୂପ ସୂକ୍ଷ୍ମୁ ସୂକ୍ଷ୍ମ ଅତି | । | ଧରୁ ପୁଣି ଅନନ୍ତ ମୂର୍ତ୍ତି | ॥୪୩/ ୬॥ |
| ନମସ୍ତେ ପ୍ରଭୁ ଶୂନ୍ୟବ୍ରହ୍ମ | । | ଶରୀରେ ଚଉଦ ଭୁବନ | ॥୪୩/ ୭॥ |
| ସର୍ବ ସମୟେ ସର୍ବସ୍ଥାନେ | । | ରହିଛ ତୁମେ ପରିପୂର୍ଣ୍ଣେ | ॥୪୩/୮॥ |
| ଶ୍ରୀକ୍ଷେତ୍ର ନୀଳାଦ୍ରି ଗୁହାରେ | । | ବସିଛ କେଶରୀ ରୂପରେ | ॥୪୩/ ୯॥ |
| ନାଶିବା ପାଇଁ ଭକ୍ତ ଦୁଃଖ | । | ଜଗତ ନାଥ କଳାମୁଖ | ॥୪୩/ ୧୦॥ |
| ଚରଣେ କରୁଛି ଗୁହାରି | । | ଚରମ ଚକ୍ଷୁରେ ମୋହରି | ॥୪୩/ ୧୧॥ |
| ଶରଣ ରଖି ପୀତବାସ | । | ଦେଖା ଦିଅ ହେ ନୀଳାଦ୍ରୀଶ | ॥୪୩/ ୧୨॥ |

ମାଧୁର୍ଯ୍ୟୈଶ୍ୱର୍ଯ୍ୟପୂର୍ଣ୍ଣଃ ଶିତଧରପରମବ୍ୟୋମ ଗୋଲକନାଥଃ
ଶ୍ରୀଭୂଲୀଳାଦିସେବ୍ୟୋଦରକମଳଗଦାଚକ୍ରଭୃଦ୍ୱେଣୁପାଣିଃ ।
ଭୁକ୍ତେର୍ମୁକ୍ତେଶ୍ଚ ଭକ୍ତେର୍ବିତରଣ ନିପୁଣଶ୍ଚିଦ୍‌ଘନାନନ୍ଦମୂର୍ତ୍ତିଃ-
ସର୍ବବ୍ୟାପୀ ପରାତ୍ମା ସ ଭବତୁ ଭଗବାନ୍ ବ୍ରହ୍ମଭୂତିଗର୍ତିର୍ନଃ ।୪୪ ।

ସେ ସର୍ବବ୍ୟାପୀ,ପରମାତ୍ମା ଓ ଭଗବାନ୍ ବ୍ରହ୍ମାଙ୍କର ଐଶ୍ୱର୍ଯ୍ୟ । ମୋକ୍ଷ,ଭୋଗ ଓ ଭକ୍ତିର ବିତରଣ ବିଷୟରେ ସେ ଅତ୍ୟନ୍ତଦକ୍ଷ । ପ୍ରେମ ବିଭୁତିରେ ସେ ପରିପୂର୍ଣ୍ଣ ଏବଂ ତାଙ୍କର ଶରୀର ଜ୍ଞାନାନନ୍ଦରେ ସମ୍ପୂର୍ଣ୍ଣ । ସେ ବଂଶୀଧର ଓ ଚାରିହାତରେ ଶଙ୍ଖ,ଚକ୍ର,ଗଦାଓ ପଦ୍ମ ଧାରଣ କରି ରହିଅଛି । ସେ ମହାଲକ୍ଷ୍ମୀ,ଭୁଦେବୀ ଓ ଲୀଳା ଆଦି ଦେବୀମାନଙ୍କଦ୍ୱାରା ବରାବର ସେବିତ ହେଉଛନ୍ତି । ସେ ନୀଳାଚଳରୂପକ ବୈକୁଣ୍ଠ ପ୍ରଭୁଅଟନ୍ତି । ସେ ଆମ୍ଭମାନଙ୍କରଗତି । ।୪୪।

ନମସ୍ତେ ପ୍ରଭୁ ସର୍ବବ୍ୟାପୀ । ସବୁ ଘଟରେ ଅଛ ବ୍ୟାପୀ ॥୪୪/୧॥
ନମସ୍ତେ ପ୍ରଭୁ ପରମାତ୍ମା । ସବୁ ଜୀବରେ ତୁମ୍ଭେ ଆତ୍ମା ॥୪୪/୨॥
ସୃଷ୍ଟିକୁ ବ୍ରହ୍ମା ଦିଏ ରୂପ । ତୁମେ ତାର ଐଶ୍ୱର୍ଯ୍ୟ ରୂପ ॥୪୪/୩॥
ଜୀବରେ ଭକ୍ତି ଭୋଗ ମୋକ୍ଷ । ବିତରଣରେ ତୁମ୍ଭେ ଦକ୍ଷ ॥୪୪/୪॥
ପ୍ରେମ ବିଭୂତିରେ ତୁ ପୂର୍ଣ୍ଣ । ଜ୍ଞାନାନନ୍ଦରେ ପରିପୂର୍ଣ୍ଣ ॥୪୪/୫॥
ଚାରି ହାତରେ ବଂଶୀଧର । ପଦ୍ମ ଗଦା ଶଙ୍ଖ ଚକର ॥୪୪/୬॥
କମଳା ଲୀଳା ଓ ଭୂଦେବୀ । ସଦା ତୁମର ପାଦ ସେବୀ ॥୪୪/୭॥
ନୀଳାଚଳ ବଇକୁଣ୍ଠ ପତି । ପ୍ରଭୁ ତୁମ୍ଭେ ଆମର ଗତି ॥୪୪/୮॥
ଦୟା କର ହେ ଦୟାମୟ । ତୁମ୍ଭ ଚରଣ ମୋ ଆଶ୍ରୟ ॥୪୪/୯॥



ରାଜନ୍ ପ୍ରସାଦରାଜେ ବୃଜିନ ବନରୁଜାକୁଞ୍ଜରଃ କୁଞ୍ଜପୁଞ୍ଜେ
ମଞ୍ଜୌ ସଂଜାତ ଶାବତ ବ୍ରଜଯୁବତିଜନାନ୍ ରଞ୍ଜିତାନ୍ ବ୍ୟଞ୍ଜନନ୍ ଯଃ ।
ଗର୍ଜତ୍ ପର୍ଜନ୍ୟରାଜିପ୍ରତିଭଟଲବଣାମ୍ଭୋଧିକୂଳସ୍ଥନୀଳ-
କ୍ଷ୍ମାଭୃଦ୍‌ଭୂସାର୍ବଭୌମଃ ସ ଭବତୁ ଭବିନାଂ ଭୂତୟେ ଦେବରାଜଃ । ୪୫ ।

ସେହି ଦେବରାଜ ଶ୍ରୀଜଗନ୍ନାଥ ସଂସାରୀ ଲୋକଙ୍କୁ ଐଶ୍ୱର୍ଯ୍ୟ ପ୍ରଦାନ କରନ୍ତୁ । ସେ ସର୍ବୋତ୍ତମ ପ୍ରାସାଦରେ ବିରାଜମାନ ଅଛନ୍ତି । ପାପରୂପକ ବନର ରୋଗକୁ ଦଳିଦେବା ବିଷୟରେ ସେ ଗୋଟିଏ ହାତୀ । ମନୋହର କୁଞ୍ଜସମୂହରେ ଅନୁରକ୍ତ ଓ ସୁଖୀ ବ୍ରଜ ଯୁବତୀମାନଙ୍କର ଆନନ୍ଦକୁ ସେ ଖୁବ୍ ବଢାଇ ଦେଇଥିଲେ । ଗର୍ଜୁଥିବା ମେଘ ସମୁହର ପ୍ରତିଯୋଦ୍ଧା ଭାବରେ ଥିବା କ୍ଷୀର ସମୁଦ୍ରର ତୀରରେ ଯେଉଁ ନୀଳ ପର୍ବତ ଅଛି ଥିରେ ଥିବା ଭୂମିର ସେ ରାଜାଧିରାଜ ଅଟନ୍ତି । ।୪୫।

| | | | |
|---|---|---|---|
| ନମସ୍ତେ ଶ୍ରୀପୁରୁଷୋତ୍ତମ | । | ପ୍ରାସାଦ ତୁମ ସର୍ବୋତ୍ତମ | ॥୪୫/୧॥ |
| ନୀଳପର୍ବତ ଶିରଶୋଭା | । | ଶିରି ମନ୍ଦିରେ ମନଲୋଭା | ॥୪୫/୨॥ |
| ରତ୍ନ ସିଂହାସନେ ବିରାଜି | । | ଶୁଣୁଛ ଭକ୍ତଙ୍କ ଅରଜି | ॥୪୫/୩॥ |
| କଳା ହାତୀ ଯେ ନୀଳାଦ୍ରୀଶ | । | ପାପବନ ରୋଗକୁ ନାଶ | ॥୪୫/୪॥ |
| କୁଞ୍ଜ ସମୁହେ ଅନୁରକ୍ତ | । | ବ୍ରଜ ଯୁବତୀ ଭକ୍ତି ଭକ୍ତ | ॥୪୫/୫॥ |
| ମନୋହର କୁଞ୍ଜକୁ ଯାଇ | । | ବ୍ରଜବାଳାନନ୍ଦ ବଢ଼ାଇ | ॥୪୫/୬॥ |
| ପରମ ସୁଖ ତାଙ୍କୁ ଦେଲ | । | ବ୍ରଜବନ୍ଧୁ ନାମ ବହିଲ | ॥୪୫/୭॥ |
| ଗର୍ଜନଶୀଳ ବଉଦର | । | ପ୍ରତିସ୍ପର୍ଦ୍ଧୀ କ୍ଷୀର ସାଗର | ॥୪୫/୮॥ |
| ତା ତୀରେ ନୀଳ ପରବତ | । | ସ୍ଥାନର ନାମ ଶିରିକ୍ଷେତ୍ର | ॥୪୫/୯॥ |
| ନମସ୍ତେ ଶିରିକ୍ଷେତ୍ରନାଥ | । | ଅନାଥ ନାଥ ଜଗନ୍ନାଥ | ॥୪୫/୧୦॥ |
| ନମସ୍ତେ ଶଙ୍ଖ କ୍ଷେତ୍ର ରାଜ | । | ଶ୍ରୀଜଗନ୍ନାଥ ଦେବରାଜ | ॥୪୫/୧୧॥ |
| ଅଇଶ୍ୱର୍ଯ୍ୟ ସଂସାରୀ ଜନେ | । | କୃପାକର ପ୍ରଭୁ ପ୍ରଦାନେ | ॥୪୫/୧୨॥ |
| ମୁଁ ତୁମ୍ଭର ଦାସର ଦାସ | । | ଦୟାକର ହେ ପୀତବାସ | ॥୪୫/୧୩॥ |

କଂସାକର୍ଷକ୍ରିୟାକୃତ୍ କନକବସନକଃ କୁଞ୍ଜକେଳୀ କଳାପୀ
କେଶୋଦ୍ୟତ୍ କେକିପୁଚ୍ଛଃ କୃତକଳିକଲୁଷକ୍ଳେଶକୃତ୍ତିଃ କୃତଜ୍ଞଃ ।
କଳ୍ପାକ୍ରାନ୍ତତ୍ରିଲୋକୀକବଳନକଳିତକ୍ରୂରକାଳାଗ୍ନିରୁଦ୍ରଃ
କୃଷ୍ଣଃ କଲ୍ୟାଣକାରୀ ଭବତୁ କବିକୁଲୋଦ୍ କୀର୍ତ୍ତି ତାଙ୍କକକୀର୍ତ୍ତିଃ ।୪୬ ।

କୃଷ୍ଣ ଆମର କଲ୍ୟାଣ କାରୀ ହୁଅନ୍ତୁ । କବିମାନେ ତାଙ୍କର ଅସଂଖ୍ୟ କୀର୍ତ୍ତିକୁ ବର୍ଣ୍ଣନା କରିଯାଇଛନ୍ତି । ସେ ସ୍ୱର୍ଣ୍ଣ (ହଳଦିଆ) ପରି ଲୁଗା ପିନ୍ଧୁଥିଲେ । ତାଙ୍କର କେଶରେ ମୟୂରପୁଚ୍ଛ ଶୋଭା ପାଉଥିଲା । ସେ କଂସାସୁରକୁ ନାଶକରି ଦେଇଥିଲେ । କଳିଯୁଗରେ ପାପ ଓ ଦୁଃଖକୁ  ସେ ନଷ୍ଟ କରି ଦେଇଥିଲେ । ସେ କୃତଜ୍ଞ ଅର୍ଥାତ୍ ଭକ୍ତମାନଙ୍କ ନିମନ୍ତେ ତାଙ୍କର ବିଶେଷ ଦୟା ଥିଲା । କଳ୍ପ ଶେଷରେ ସେ ତିନି ଭୁବନ ଆକ୍ରମଣ କରି ଗ୍ରାସ କରିଥିବାରୁ ଅତି ନିଷ୍ଠୁର ଅଟନ୍ତି । ସେତେବେଳେ ହିଁ ସେ ଭୟଙ୍କର ଅଗ୍ନିରୂପ ଧାରଣ କରୁଥିବାରୁ ସେ ଭୟଙ୍କର ଅଟନ୍ତି । ।୪୬।

ନମସ୍ତେ ପ୍ରଭୁ ପୀତବାସ । ନମସ୍ତେ ପ୍ରଭୁ ନୀଳାଦ୍ରୀଶ ।।୪୬। ୧।।
ନମସ୍ତେ କେକୀପୁଚ୍ଛଧାରୀ । କୁଞ୍ଜେ ମୟୂର ରୂପଧାରୀ ।।୪୬। ୨।।
ନମସ୍ତେ କଳି ପାପନାଶି । କଂସ ମାରିଲ କେଶାକର୍ଷି ।।୪୬।୩।।
ନମସ୍ତେ କାଳ ଅଗ୍ନି ଗ୍ରାସୀ । କଳ୍ପାନ୍ତେ ତିନି ପୁର ଗ୍ରାସୀ ।।୪୬।୪।।
ନମସ୍ତେ ନିଷ୍ଠୁର ଠାକୁର । ନମସ୍ତେ ଅଗ୍ନି ରୂପଧର ।।୪୬।୫।।
କବି ବର୍ଣ୍ଣେ ଯା ଯଶ କୀର୍ତ୍ତି । ନମସ୍ତେ ପ୍ରଭୁ ଶାନ୍ତମୂର୍ତ୍ତି ।।୪୬।୬।।
ନମସ୍ତେ ସଂସାର ପାଳକ । ନମସ୍ତେ କଲ୍ୟାଣ କାରକ ।।୪୬।୭।।
ନମସ୍ତେ ପ୍ରଭୁ ରୁଦ୍ରମୂର୍ତ୍ତି । ନମସ୍ତେ ଚତୁର୍ଦ୍ଧା ମୂରତି ।।୪୬।୮।।
କଲ୍ୟାଣ କର ଭଗବାନ । ପାଦରେ କରୁଛି ପ୍ରଣାମ ।।୪୬। ୯।।

ସଂଖ୍ୟେଽସଂଖ୍ୟେୟଦୁଃକ୍ଷେପଣକୁଣପଭୁଜାଂ ବକ୍ଷସି କ୍ଷିପ୍ତବାଣଃ
ପକ୍ଷେ ସଖ୍ୟେଽତିଦକ୍ଷେଽସୁରବରତନୁଜେ କ୍ୟାତ ସୌଖ୍ୟୋଽମ୍ବୁଜାକ୍ଷଃ ।
ଅକ୍ଷେଽ ଧିକ୍ଷେପଲେକ୍ଷ୍ୟେ କୁରୁକୁଳନୃପତେ ଧର୍ମରାଜେକୃପାଳୁ
ରକ୍ଷେଦକ୍ଷେମବିକ୍ଷେପକ ଉଦଧିତଟେ କ୍ଷେତ୍ରରାଟ୍କ୍ଷ୍ମାପତିର୍ନଃ ।୪୭ ।

ସାଗର ତଟରେ ଥିବା ତୀର୍ଥରାଜ ପୁରୁଷୋତ୍ତମର ରାଜା ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ସେ ଅମଙ୍ଗଳର ନାଶକ, ଯୁଦ୍ଧରେ ଅସଂଖ୍ୟଦୁର୍ଦ୍ଧର୍ଷ ରାକ୍ଷାସଙ୍କର ବକ୍ଷସ୍ଥଳରେ ସେ ଶର ନିକ୍ଷେପ କରିଛନ୍ତି । ହିରଣ୍ୟକଶିପୁଙ୍କର ତନୟ ପ୍ରହଲ୍ଲାଦ ତାଙ୍କ ମିତ୍ରପକ୍ଷର ଥିଲେ ଏବଂ ସେ ବଡ଼ ଚତୁର ଥିଲେ । ଭଗବାନ୍ ଶ୍ରୀ ଜଗନ୍ନାଥ ତାଙ୍କୁ ଅଶେଷ ଆନନ୍ଦ ଦେଇଅଛନ୍ତି । ସେ ପୁଣ୍ଡରୀକାକ୍ଷ । ଦ୍ୟୂତ କ୍ରୀଡ଼ାରେ କୁରୁକୁଳପତି ଦୁର୍ଯ୍ୟୋଧନ ଧର୍ମରାଜଯୁଧିଷ୍ଠିରଙ୍କୁ ଅପମାନ ଦେବାରେ ସେ ଯୁଧିଷ୍ଠିରଙ୍କ ପ୍ରତି ଦୟାଭାବ ଦେଖାଇଥିଲେ । ।୪୭।

ପୂର୍ବ ସାଗର ତଟ ସ୍ଥାନ । ଯେ ଠାରେ ବିଜେ ଭଗବାନ ।।୪୭/୧।।
ତୀର୍ଥରାଜ ପୁରୁଷୋତ୍ତମ । ବିଶ୍ୱେ ପ୍ରସିଦ୍ଧ ଯାର ନାମ ।।୪୭/୨।।
ତାହାର ରାଜା ଯେଉଁ ପ୍ରଭୁ । ହରନ୍ତି ଦୁଃଖ ଭକ୍ତ ହୃଦୁ ।।୪୭/୩।।
ସେ ଅମଙ୍ଗଳର ନାଶକ । ସାଧୁ ଓ ସନ୍ଥଙ୍କ ରକ୍ଷକ ।।୪୭/୪।।
ଅସଂଖ୍ୟ ରାକ୍ଷସଙ୍କ ବକ୍ଷେ । ଶର ସେ ନିକ୍ଷେପନ୍ତି ଦକ୍ଷେ ।।୪୭/୫।।
ହିରଣ୍ୟକଶିପୁର ପୁତ୍ର । ଭକତ ପ୍ରହ୍ଲାଦର ମିତ୍ର ।।୪୭/୬।।
ସେ ପ୍ରଭୁ ଅତ୍ୟନ୍ତ ଚତୁର । ତାରେ ଦେଲେ ଖୁସି ଅପାର ।।୪୭/୭।।
ଦ୍ୟୁତକ୍ରୀଡ଼ାରେ ଦୁର୍ଯ୍ୟୋଧନ । ଯୁଧିଷ୍ଠିରରେ ଅପମାନ ।।୪୭/୮।।
ଦେଲା ଦେଖାଇ କ୍ରୂରଭାବ । ତାରେ ପ୍ରଦର୍ଶୀ ଦୟାଭାବ ।।୪୭/୯।।
ସଂସାରେ ଦେଲ ଶ୍ରେଷ୍ଠସ୍ଥାନ । ଭକତବନ୍ଧୁ ଭଗବାନ ।।୪୭/୧୦।।

କାରାଗାରାନୁକାରାନୁମିତଭବଦଚ୍ଛେଦ ନୋଦ୍ୟତ୍ କୁଠାରଃ
କାଳବ୍ୟାଳାସ୍ୟମୀଳଜ୍ଜଗଦବନଗଦଃ ଶ୍ରୀଳନୀଳାଦ୍ରି ସିଂହଃ ।
ମାରାକାରାବକାରାନବରତରତନ୍ବର୍ଭାନୁଭୂଦଣ୍ଡଖଣ୍ଡୀ
ସର୍ବାଗୀର୍ବାଣଗର୍ବାଚଳପବିରବତୁ ପ୍ରାକ୍ତଃନଃ ପୂରୁଷୋନଃ ।୪୮ ।

ପୁରାଣ ପୁରୁଷ ନୀଳାଚଳ କେଶରୀ ଶ୍ରୀ ଜଗନ୍ନାଥ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ସେ ସମସ୍ତ ଦୈତ୍ୟଙ୍କର ଗର୍ବରୂପୀ ପର୍ବତକୁ ବଜ୍ରପରି ଖଣ୍ଡନ କରିଥିଲେ । ତାଙ୍କର ଶରୀର କନ୍ଦର୍ପଙ୍କ ଆକୃତିକୁ ତୁଚ୍ଛ କରିବାରେ ଶ୍ରେଷ୍ଠ ଥିଲା । କାଳରୂପକ ସର୍ପର ମୁହଁରେ ପଡ଼ି ଗ୍ରସ୍ତ ହେଉଥିବା ସଂସାରର ସେ ରକ୍ଷାକବଚ (ରକ୍ଷା ଔଷଧ) । କାରାଗାରର ଅନୁକରଣରେ ହୋଇଥିବା ସଂସାର ବୃକ୍ଷକୁ କାଟି ଦେବାରେ ସେ କୁରାଢ଼ିର କାମ କରନ୍ତି । ।୪୮।

| | | | |
|---|---|---|---|
| ନମସ୍ତେପୁରାଣ ପୁରୁଷ | । | ନମସ୍ତେ ନୀଳାଚଳଈଶ | ।।୪୮/୧।। |
| ନମସ୍ତେ ଦଇତ ଅଇରି | । | ନମସ୍ତେ ଶ୍ରୀକ୍ଷେତ୍ର କେଶରୀ | ।।୪୮/୨।। |
| ଦଇତ ଗରବ ପର୍ବତ | । | କର ବଜ୍ର ପ୍ରାୟେ ଖଣ୍ଡିତ | ।।୪୮/୩।। |
| ଶରୀର ତୁମ ମନୋହର | । | ନିନ୍ଦଇ ଫୁଲ ଶରଧର | ।।୪୮/୪।। |
| କାଳସର୍ପ ମୁଖେ ପଡିତ | । | ସଂସାର ରୋଗରେ ଗ୍ରାସିତ | ।।୪୮/୫।। |
| କଳିହତ ଯେତେ ଜୀବର | । | ରକ୍ଷାକବଚ ତୁମେ ତାର | ।।୪୮/୬।। |
| ଅନୁକରଣେ କରାଗାର | । | ବୃକ୍ଷ ରୂପକ ଏ ସଂସାର | ।।୪୮/୭।। |
| ଛେଦନ ନିମନ୍ତେ ତାହାର | । | କୁଠାର ସ୍ୱରୂପ ତୁମର | ।।୪୮/୮।। |
| ଜଗନ୍ନାଥକୃପାସାଗର | । | ଏଥୁ ପ୍ରଭୁ ହେ ରକ୍ଷାକର | ।।୪୮/୯।। |
| ସେହି ମୋ ହୃଦୟ ଚନ୍ଦନ | । | ତା ପାଦେ ଥାଉ ମୋର ମନ | ।।୪୮/୧୦।। |
| ପଶୁଛି ତୋ ପାଦେ ଶରଣ | । | ଉଦ୍ଧର ଶ୍ରୀକ୍ଷେତ୍ର ରମଣ | ।।୪୮/୧୧।। |

ଧୀରାଧୀରାଦିସଲ୍ଲକ୍ଷଣଚଣରମଣୀବର୍ଗସଙ୍ଗୀତରାଗଃ
କ୍ଷାରାମ୍ଭୋରାଶିତୀରାବନିଧର ଶିଖର ପ୍ରସ୍ତ ରାଗାରସାରଃ ।
ସ୍ୱାରାନ୍ନୀରାଜିତାଂଘ୍ରିବୃଂ ହଦତୁଳଭୁଜଃକୁଞ୍ଜରାପତ୍ତି ଭେତ୍ତା
ଭାରାହାରା ବତାରୋ ବିତରତୁ ନିତରାଂ ଶ୍ରୀଧରଃ ଶ୍ରୀଭରଂନଃ ।୪୯ ।

ଶ୍ରୀଜଗନ୍ନାଥ ଆମ୍ଭର ସୌନ୍ଦର୍ଯ୍ୟାତିଶୟର ବୃଦ୍ଧିନିମନ୍ତେ ଚେଷ୍ଟା କରନ୍ତୁ । ତାଙ୍କର ଦୀର୍ଘ ଓ ଅତୁଳନୀୟ ଭୁଜଅଛି । ଇନ୍ଦ୍ରତାଙ୍କର ପୂଜା କରନ୍ତି । ସେ ଗଜର ବିପଦ ନାଶ କରିଥିଲେ । ଭୂମିର ଭାଗ ନିବାରଣ ପାଇଁ ସେ ବରାବର ଅବତାର ଗ୍ରହଣ କରନ୍ତି । ଲବଣ ସାଗରର ତଟ ଦେଶରେ ଥିବା ନୀଳାଚଳ ଶିଖରସ୍ଥ ପାଷାଣ ମନ୍ଦିରରେ ସେ ଶ୍ରେଷ୍ଠ( ଦେବତାରୂପରେ) ରହିଛନ୍ତି । (ଦ୍ୱାପର ଯୁଗରେ) ଉତ୍ତମ ଲକ୍ଷଣଯୁକ୍ତ ଧୀରା, ଅଧୀରା ଆଦି ନାୟିକା (ଗୋପନାୟିକା) ମାନେ ତାଙ୍କ ଅନୁରାଗର ଅଶେଷ ପ୍ରଶଂସା କରିଛନ୍ତି । ।୪୯।

ଯେ ପ୍ରଭୁ ଲବଣ ସାଗର । ତଟରେ କରନ୍ତି ବିହାର ॥୪୯/୧॥
ଶ୍ରୀନୀଳାଚଳର ଶିଖର । ଶୋହେ ଯେ ପାଶାଣ ମନ୍ଦିର ॥୪୯/୨॥
ତା ମଧ୍ୟେ ଦେବତା ରୂପରେ । ବସି ଯେ ଭକ୍ତ ମନ ହରେ ॥୪୯/୩॥
ସେ ପ୍ରଭୁ ଗଜର ବିପଦ । ବିନାଶି ଦେଲେ ସ୍ୱର୍ଗ ପଦ ॥୪୯/୪॥
ଭୂମିର ଭାରା ନିବାରଣ । ଯାର ଅବତାର ଗ୍ରହଣ ॥୪୯/୫॥
ଧୀରାଧୀରା ଗୋପନାୟିକା । ଯା ଅନୁରାଗ ପ୍ରଶଂସିକା ॥୪୯/୬॥
ଇନ୍ଦ୍ର ପୂଜେ ପାଦ ଯାହାର । ଭୁଜ ଯା ଅତି ବଳିୟାର ॥୪୯/୭॥
ତା ଭୁଜ ଛତ୍ର ଛାୟାତଳେ । ଶିର ମୋ ରହୁ ସଦାବେଳେ ॥୪୯/୮॥
ସମର୍ଥ ପ୍ରଭୁ ସିଏ ମୋର । ବସିଛି ଶ୍ରୀନୀଳକନ୍ଦର ॥୪୯/୯॥
ଶ୍ରୀ ବୃଦ୍ଧି କରନ୍ତୁ ଆମର । ନମୁଛି ମୁଁ ତାର ପୟର ॥୪୯/୧୦॥

ହ୍ଲାଦିନ୍ୟାହ୍ଲାଦସୀମାର୍ବୁଦମଦନରୁଚିଃ ସନ୍ଧିନୀସନ୍ଧିତାତ୍ମା
ସଂବିତ୍‌ସଂବାତଧାମା ନିଗମଗଣଶିରସ୍ତୁତ୍ୟସତ୍ୟପ୍ରଭାବଃ ।
ଶେଷାଶେଷାଙ୍ଗାସଦ୍ମା ସୁରତରୁତଳଭାକ୍‌କଳ୍ପିତପ୍ରେମରୂପଃ-
ଶ୍ରୀକୃଷ୍ଣଃ ପ୍ରେମଭକ୍ତିଂ ବିତରତୁ ହୃଦି ନଃ ସଚ୍ଚିଦାନନ୍ଦରୂପଃ । ୫୦ ।

ସଚ୍ଚିଦାନନ୍ଦରୂପୀ ଶ୍ରୀକୃଷ୍ଣ (ଶ୍ରୀଜଗନ୍ନାଥ) ଆମର ହୃଦୟରେପ୍ରେମ ଓ ଭକ୍ତି ବିତରଣ କରନ୍ତୁ । ଆହ୍ଲାଦିନୀ ଶକ୍ତି(ରାଧିକା)ଙ୍କର ସେ ସୁଖସୀମା । ଅର୍ବୁଦ କନ୍ଦର୍ପର କାନ୍ତି ତାଙ୍କ ପାଖରେ ପୁରି ରହିଛି । ସନ୍ଧିନୀ ଶକ୍ତିରେ ତାଙ୍କର ଶରୀର ଆପ୍ଲୁତ । ବେଦର ଅଗ୍ରଭାଗ ଉପନିଷଦ୍ ତାଙ୍କର ସ୍ତୁତି କରନ୍ତି । ତାଙ୍କର ପ୍ରଭାବ ସତ୍ୟରେ ପ୍ରତିଷ୍ଠିତ । ଅନନନ୍ତଙ୍କର ସମସ୍ତ ଅଙ୍ଗରେ ତାଙ୍କର ଘର । ତାଙ୍କୁ ପ୍ରେମ ମୂର୍ତ୍ତି ଭାବରେ କଳ୍ପନା କରାଯାଇଥାଏ । କଳ୍ପବଟ ମୂଳହିଁ ତାଙ୍କର ଆଶ୍ରୟ ସ୍ଥଳ । ।୫୦।

ହ୍ଲାଦିନୀ ଶକ୍ତି ସୁଖସୀମା ।    ବିସ୍ତାର ଯା' ଭୂମିରୁ ଭୂମା ॥୫୦/୧॥
ଯୋଗ ଶକତି ଯୁକ୍ତ ଯୋଗୀ ।    ଯୋଗେଶ୍ୱର ଭକତି ଭୋଗୀ ॥୫୦/୨॥
ସଂବିତ ଶକ୍ତିରେ ଆପ୍ଲୁତ ।    ପ୍ରିୟ ତାର ଭକ୍ତି ଭକତ ॥୫୦/୩॥
ସତ୍ୟ ଯେ ସତ୍ୟେ ପ୍ରତିଷ୍ଠିତ ।    ଶୟନ ଶେଜ ଯା' ଅନନ୍ତ ॥୫୦/୪॥
ଉପନିଷଦ କରେ ସ୍ତୁତି ।    ପ୍ରେମ ସ୍ୱରୂପ ପ୍ରେମ ମୂର୍ତ୍ତି ॥୫୦/୫॥
କଳପବଟ ମୂଳବାସୀ ।    ଭକତ ହୃଦୟ ନିବାସୀ ॥୫୦/୬॥
ଯାହାର କଳ୍ପବଟମୂଳ ।    ଅଟେ ନିତ୍ୟ ଆଶ୍ରୟସ୍ଥଳ ॥୫୦/୭॥
ସଚ୍ଚିଦାନନ୍ଦରୂପୀରାମ ।    ବିତରୁ ଭକତି ଓ ପ୍ରେମ ॥୫୦/୮॥
ବନ୍ଦୁଛି ତା ଚରଣ ଛନ୍ଦା ।    ମୋ ମନ ତା ଚରଣେ ବନ୍ଧା ॥୫୦/୯॥



ରାଧାସାଧାରଣ ଶ୍ରୀକମନସୁମନସଂ କେକିପିଚ୍ଛାବତଂ ସଂ–
ଚନ୍ଦ୍ରାବଲ୍ୟାଦିରାଗାଚ୍ଛିଦୁରସୁରନଦୀ ସଂଗ୍ରହାଗାଧସିନ୍ଧୁମ୍ ।
ବଂଶୀସଂଶୀଳିତାସ୍ୟଂ କନକମଣିମୟାକଚ୍ଛମାକଚ୍ଛୟନ୍ତଂ
ବିଦ୍ୟୁଦ୍ୱିଦ୍ୟୋତିବସ୍ତ୍ରଂ ନବଜଳଦରୁଚିଂ ଶ୍ରୀ ଜଗନ୍ନାଥମୀଢ଼େ । ୫୧ ।

ଶ୍ରୀ ଜଗନ୍ନାଥଙ୍କୁ ମୁଁ ପୂଜା କରୁଅଛି । ସେ ଲକ୍ଷ୍ମୀଙ୍କୁ ରାଧା ସମାନ ଦେଖୁଥିଲେ ଏବଂ ତାଙ୍କର କାମୁକଦେବ ହୋଇରହିଥିଲେ । କେକୀ(ମୟୂର)ପୁଚ୍ଛ ତାଙ୍କର ଅଳଙ୍କାର ଅଟେ । ଚନ୍ଦ୍ରାବଳୀ ପ୍ରଭୃତି ଗୋପଯୁବତୀଙ୍କର ନିରବିଚ୍ଛିନ୍ନ ଗଙ୍ଗାନଦୀ ପରି ଅନୁରାଗ ଧାରାର ସଂଗ୍ରହ ବିଷୟରେ ସେ ଅତଳସ୍ପର୍ଶୀ ସାଗର ଥିଲେ । ସବୁବେଳେ ସେ ବଂଶୀ ବାଦନ ରତ ଥିଲେ । ତାଙ୍କର ବେଶଭୂଷା ସ୍ୱର୍ଣ୍ଣ ଓ ରତ୍ନ ମୟ ଥିଲା । (ସେ ସୁନା ଓ ରତ୍ନରେ ତାଙ୍କର ବେଶ ଭୂଷା ରଚନା କରିଥିଲେ । ତାଙ୍କର ଲୁଗା ବିଜୁଳି ପରି ଚକ୍ ଚକ୍ କରୁଥିଲା । ବର୍ଷୁକ ମେଘ- ପରି ତାଙ୍କ ଶରୀରର କାନ୍ତିଅଟେ । ।୫୧ ।

ଶ୍ରୀ ଜଗନ୍ନାଥଙ୍କ ଚରଣ । କରୁଛି ପୂଜନ ବନ୍ଦନ ।।୫୧/୧।।
ଲକ୍ଷ୍ମୀଙ୍କୁ ରାଧାଙ୍କ ସମାନ । ଦିଅନ୍ତି ଯେ ହୃଦୟେ ସ୍ଥାନ ।।୫୧/୨।।
ଲକ୍ଷ୍ମୀପତି ସେ କାମଦେବ । ସେ ତାଙ୍କ ହୃଦୟର ଦେବ ।।୫୧/୩।।
କେକୀ ପୁଚ୍ଛ ତା ଅଳଙ୍କାର । ବଂଶୀବାଦନ ପ୍ରିୟ ତାର ।।୫୧/୪।।
ସୁବର୍ଣ୍ଣ ରତ୍ନମୟ ବେଶ । ମନ ମୋହଇ ପୀତବାସ ।।୫୧/୫।।
କାଳିଆ ବଉଦ ଶରୀର । ବିଜୁଳି ପରାୟେ ତା ପର ।।୫୧/୬।।
ଚନ୍ଦ୍ରାବଳୀ ଆଦି ଯୁବତୀ । ଗୋପରେ ଯେତେ ଯେତେ ଛନ୍ତି ।।୫୧/୭।।
ଅନୁରାଗ ଧାରାତାଙ୍କର । ସଂଗ୍ରହେ ଯିଏ ପାରାବାର ।।୫୧/୮।।
ପୀତବସନ ମନୋହର । ମୋ ପ୍ରାଣ କାଳିଆ ଠାକୁର ।।୫୧/୯।।
ମନଜିଣା ରୂପ ତାହାର । ଆକର୍ଷେ ପ୍ରାଣକୁ ମୋହର ।।୫୧/୧୦।।
ତା ହାତେ ମୋ ହୃଦୟ ତନ୍ତ୍ରୀ । ସିଏ ମୋ ଶରୀରର ତନ୍ତ୍ରୀ ।।୫୧/୧୧।।
ତା ବିନା ନାହିଁ ମୋରଗତି । ମୋତେ ଉଦ୍ଧର ଲକ୍ଷ୍ମୀପତି ।।୫୧/୧୨।।
ପାପ ପ୍ରଭାବୁ ରଖୁ ମୋତେ । ପ୍ରାର୍ଥନା ଏତେ ତା ଅଗ୍ରତେ ।।୫୧/୧୩।।

ଯସ୍ୟ ଶ୍ରୀ ବିଗ୍ରହୋଦ୍ୟଦ୍ଧ୍ୟୁତିରିତି ପରମବ୍ରହ୍ମ ବେଦାନ୍ତବେଦ୍ୟଂ
କୋଟୀ ବ୍ରହ୍ମାଣ୍ଡଭାରୀ ପରମଶିବଭବଃ ଶ୍ରୀମହାବିଷ୍ଣୁରଂଶଃ ।
ଯସ୍ୟଭ୍ରୂକ୍ଷେପମାତ୍ରାତ୍ ସୃଜତି ହରିହରବ୍ରହ୍ମଶକ୍ରାଦିଦେବାନ୍
ମାୟାପାୟାଦପାୟାଦୟ ମୁଦିତଦୟଃ ପୁଣ୍ଡରୀକେଶ୍ୱରୋଽସ୍ମାନ୍ ।୫୨ ।

ଯାହାର ସୁନ୍ଦର ଶରୀର ଜ୍ୟୋତି ଜାଜ୍ୱଲ୍ୟମାନ, ଯାହାପୁଣି ପରଂବ୍ରହ୍ମ ବୋଲି ବେଦାନ୍ତ( ଉପନିଷଦ)ରୁ ଜଣାଯାଏ ଯେ କୋଟି ବ୍ରହ୍ମାଣ୍ଡର ଭାର ବହନ କରି ରହିଅଛି ଏବଂ ଯାହାଠାରୁ ପରମ ମଙ୍ଗଳ ଜାତ ହୋଇଅଛି; ସେ ସାକ୍ଷାତ୍‌ରେ ଶ୍ରୀ ମହାବିଷ୍ଣୁ । ଯାହାର ଭ୍ରୂକ୍ଷେପ ମାତ୍ର ମାୟା ବା ପ୍ରକୃତି ହରି, ହର, ବ୍ରହ୍ମାଓ ଇନ୍ଦ୍ରଆଦି ଦେବତାଙ୍କୁ ସୃଷ୍ଟି କରିଦିଏ,ସେହି ଦୟାଳୁ ଏବଂ ହୃତ୍‌ପଦ୍ମର ଈଶ୍ୱର ଶ୍ରୀଜଗନ୍ନାଥ ଆମ୍ଭମାନଙ୍କୁ ମରଣରୁ ରକ୍ଷା କରନ୍ତୁ । ଆମେ ଅମର ହେଉ ( ଏପରି କାର୍ଯ୍ୟକରୁ ଯାହା ଫଳରେ ଅମର ହୋଇ ପାରିବୁ) । ।୫୨।

ଯା' ସୁନ୍ଦର ତନୁର ଜ୍ୟୋତି । ଅଟେ ଜାଜ୍ୱଲ୍ୟମାନ ଅତି ।।୫୨/୧।।
ପରମ ବ୍ରହ୍ମ ବୋଲି ଜାଣି । ଉପନିଷଦ ଯା'ରେ ଭଣି ।।୫୨/୨।।
କୋଟିଏ ବ୍ରହ୍ମାଣ୍ଡର ଭାର । ଯା ପାଇଁ କିଞ୍ଚିତ ମାତର ।।୫୨/୩।।
ଶ୍ରୀ ମହାବିଷ୍ଣୁ ଯେ ସାକ୍ଷାତ୍ । ଯହୁଁ ପରଂମଙ୍ଗଳ ଜାତ ।।୫୨/୪।।
ଭ୍ରୂ ଚଳନ ମାତ୍ରେ ଯାହାର । ମାୟା ହୁଅଇ ଆଗୁସାର ।।୫୨/୫।।
ସୃଷ୍ଟି କରଇ ହରିହର । ଦେବତା ବ୍ରହ୍ମା ଓ ଇନ୍ଦର ।।୫୨/୬।।
ସେ ମୋ ହୃଦ ପଦ୍ମ ଈଶ୍ୱର । ଦୟାଳୁ କାଳିଆ ଠାକୁର ।।୫୨/୭।।
ରଖୁ ଛିଣ୍ଡାଇ ନାଗ ଫାଶ । ଜଗନ୍ନାଥ ମୋ ହୃଦୟେଶ ।।୫୨/୮।।
ଜନମ ମରଣ ଚକ୍ରରୁ । କୃପାରେ ମୋତେ ସେ ଉଦ୍ଧରୁ ।।୫୨/୯।।
ନେଉ ସେ ମୋତେ ତାର ପୁର । ହୋଇବି ଅଜର ଅମର ।।୫୨/୧୦।।
ନମୁଛି ପାଦରେ ତୋହର । ଶଙ୍ଖକ୍ଷେତ୍ରର ଅଧୀଶ୍ୱର ।।୫୨/୧୧।।

କୃଷ୍ଣାକୃଷ୍ଣାମ୍ବୁଧିଷ୍ଣ୍ୟାମ୍ବୁଜଚରଣରଣ କ୍ଷୀଣଗୀର୍ବାଣଶତ୍ରୋ-
କୃଷ୍ଣାକୃଷ୍ଣାଦିତୃଷ୍ଣାହରଣରଣରଣ ଶ୍ରୀତିରସ୍କାରକାରିନ୍ ।
ଉଷ୍ଣାନୁଷ୍ଣାଂଶୁବିସ୍ମାପନନୟନଯୁଗାକାର ତାରୁଣ୍ୟ ଭାରି-
ନ୍ନସ୍ମାନ୍ ଭୀଷ୍ମାଦିକୋଷ୍ମାପହବିହିତମହାପାତକାନ୍ ପାହି ପାତାତ୍ । ୫୩ ।

ହେ କୃଷ୍ଣ, ତୁମେ କ୍ଷୀର ସାଗରରେ ଘର କରିଅଛ । ତୁମର ପାଦ ଦୁଇଟି କମଳପରି । ତୁମେ ଯୁଦ୍ଧରେ ଦେବତାମାନଙ୍କର ଶତ୍ରୁ ମାନଙ୍କୁ ନାଶକରି ଦେଇଅଛ, ଦ୍ରୌପଦୀ ଓ ଅର୍ଜ୍ଜୁନ ପ୍ରଭୃତିଙ୍କର ତୃଷ୍ଣା ତୁମେ ହିଁ ନିବାରଣ କରିଛ । ତୁମେ କନ୍ଦର୍ପର ଶୋଭାକୁ ତିରସ୍କାର କରୁଛ, ତୁମର ଦୁଇଟି ଆଖି ଚନ୍ଦ୍ର ଓ ସୂର୍ଯ୍ୟର ବିସ୍ମୟ ଉତ୍ପାଦନ କରୁଅଛି,ତୁମେ ପୂର୍ଣ୍ଣ ଯୌବନକୁ ଧାରଣ କରିଅଛ, ତୁମେ ଭୀଷ୍ମ ଓ ଦ୍ରୋଣ ପ୍ରଭୃତିଙ୍କର ଗର୍ବ (ଈର୍ଷା) ଖଣ୍ଡନ କରିଅଛ । ଆମ୍ଭେମାନେ ପାପୀ- ଆମର ଅଧଃପତନରୁ ଆମକୁ ରକ୍ଷାକର । ।୫୩।

| | | | |
|---|---|---|---|
| ନମସ୍ତେ କାଳିଆ ଠାକୁର | । | କ୍ଷୀର ସାଗର ଯା'ର ଘର | ।।୫୩/ ୧।। |
| ନମସ୍ତେ କମଳ ଚରଣ | । | ଅପାଣି ପାଦ ନିରିଗୁଣ | ।।୫୩/ ୨।। |
| ସମରେ ନାଶିଛ ଅସୁର | । | ନିର୍ଭୟ କରିଅଛ ସୁର | ।।୫୩/୩।। |
| କନ୍ଦର୍ପ ଶୋଭା ତିରସ୍କାର | । | କରଇ ସୌନ୍ଦର୍ଯ୍ୟ ତୁମର | ।।୫୩/ ୪।। |
| ଚକା ଚକା ଦୁଇ ନୟନ | । | କରେ ବିସ୍ମୟ ଉତ୍ପାଦନ | ।।୫୩/ ୫।। |
| ଚନ୍ଦ୍ର ଓ ସୂର୍ଯ୍ୟ ଦୁହିଁଙ୍କର | । | ନୟନ ସେ ଦୁହେଁ ତୁମର | ।।୫୩/୬।। |
| ପୂର୍ଣ୍ଣ ଯୌବନକୁ ଧରିଛ | । | ଜଗତ ମନକୁ ମୋହୁଛ | ।।୫୩/୭।। |
| ଖଣ୍ଡିଛ ଭୀଷ୍ମ ଦ୍ରୋଣ ଗର୍ବ | । | କାର୍ଯ୍ୟ ତୁମ ଅଟେ ଅପୂର୍ବ | ।।୫୩/୮।। |
| ପାଞ୍ଚାଳୀ ଅର୍ଜ୍ଜୁନଙ୍କ ଆଶ | । | ପୂରାଇ ନାଶିଛ ନିରାଶ | ।।୫୩/ ୯।। |
| ପାପୀ ମୁଁ ବଳିଷ୍ଠ ମୋ ପାପ | । | ତୁମ୍ଭର ବଳିଷ୍ଠ ପ୍ରତାପ | ।।୫୩/ ୧୦।। |
| ମୋ ମନୁ ପାପକୁ ନିବାରି | । | ମୋତେ ଉଦ୍ଧର ଚକ୍ରଧାରୀ | ।।୫୩/ ୧୧।। |

ଶ୍ରୀରାଧାକାନ୍ତ କାନ୍ତାନନନଳିନହରେ ରାମକୃଷ୍ଣାବତାରିନ୍
ଗୋବିନ୍ଦାନନ୍ଦକାନ୍ଦାଭୁତଗୁଣବିତତେ ଶ୍ରୀପତେ ନୀପମାଳିନ୍ ।
କଂସାରେଽସାରସଂସାରହର ହରନୁତାପାରକାରୁଣ୍ୟସିନ୍ଧୋ
ଦୁଃଖାନ୍ଧୋରୁଦ୍ଧୃତିଂ ମେ ତନୁ ଦନୁଜରିପୋଽନୁଗ୍ରହପ୍ରଗ୍ରହେଣ ।୫୪ ।

ହେ ରାଧାକାନ୍ତ, ତୁମର ମୁଖ ପଦ୍ମପରି ସୁନ୍ଦର । ହେ ହରି ହେ ଗୋବିନ୍ଦ ତୁମେ ରାମ କୃଷ୍ଣ ଅବତାର ଗ୍ରହଣ କରିଥିଲ । ତୁମେ ଆନନ୍ଦର ଆଶ୍ରୟ । ତୁମ ପାଖରେ ଅଦଭୁତ ଗୁଣ ଗୁଡ଼ିଏ ଅଛି । ତୁମେ ଲକ୍ଷ୍ମୀଙ୍କର ସ୍ୱାମୀ । ତୁମର ଛାତିରେ କଦମ୍ବ ପୁଷ୍ପର ମାଳା ଶୋଭାପାଉଛି । କଂସର ତୁମେ ହିଁ ଶତ୍ରୁ । ଏହି ସଂସାରରେ ସାର କିଛି ନାହିଁ । ତୁମେ ଅସୀମ ଦୟାର ସାଗର । ତୁମକୁ ଶିବ ପୂଜା କରନ୍ତି । ତୁମେ ହିଁ ଦୈତ୍ୟମାନଙ୍କୁ ନାଶକରି ଦେଇଛ । ମୁଁ ଦୁଃଖ କୂଅରେ ପଡ଼ିଯାଇଛି । ତୁମେ ଅନୁଗ୍ରହରୂପକ ରଜ୍ଜୁ ଦ୍ୱାରା ମୋତେ ଉଦ୍ଧାର କର । ।୫୪।

| | | | |
|---|---|---|---|
| ରାଧାକାନ୍ତ ହେ କଳା ଦିଅଁ | । | ପଦ୍ମ ପରାୟେ ତୁମ୍ଭ ମୁହଁ | ।।୫୪/ ୧।। |
| ନମସ୍ତେ ହେ ହରି ଗୋବିନ୍ଦ | । | ତୁମ ଦର୍ଶନେ ମୁଁ ଆନନ୍ଦ | ।।୫୪/ ୨।। |
| ଧରିଥିଲ ରାମାବତାର | । | କୃଷ୍ଣ ରୂପେ ମାରି ଅସୁର | ।।୫୪/୩।। |
| ଆଶ୍ରୟ ତୁମେ ଆନନ୍ଦର | । | ଅଦ୍ଭୁତ ଗୁଣର ସାଗର | ।।୫୪/ ୪।। |
| ହୃଦେ କଦମ୍ବ ମାଳା ଶୋହେ | । | ରୂପ ଭକତ ମନ ମୋହେ | ।।୫୪/ ୫।। |
| ନମସ୍ତେ ଶ୍ରୀପତି ଶ୍ରୀହରି | । | ନମସ୍ତେ ବକାରି କଂସାରି | ।।୫୪/ ୬।। |
| ସଂସାରେ ନାହିଁ କିଛି ସାର | । | ସାର ଏକା ସେ ଚକ୍ରଧର | ।।୫୪/ ୭।। |
| ଅସୀମ ଦୟାର ସାଗର | । | ପୂଜନ୍ତି ଶିବ ଯା' ପୟର | ।।୫୪/ ୮।। |
| ଅପାର ଦଇତ ନାଶିଛ | । | ସାଧୁସନ୍ଥେ ରକ୍ଷା କରିଛ | ।।୫୪/ ୯।। |
| କର ହେ ପ୍ରଭୁ ଅନୁଗ୍ରହ | । | ନାଶ ମୋହର ଦୁଃଖ ଗ୍ରାହ | ।।୫୪/ ୧୦।। |
| ପଡ଼ିଛି ମୁଁ ଦୁଃଖ କୂପରେ | । | ଉଦ୍ଧାର କର ମୋତେ ବାରେ | ।।୫୪/ ୧୧।। |

ପାର୍ଥାନର୍ଥପ୍ରମାଥପ୍ରଥିତପୃଥୁଯଶୋ ମନ୍ମଥପ୍ରର୍ଥ୍ୟକାନ୍ତେ
ଶ୍ରୀମନ୍ନିତ୍ୟସ୍ଥଳସ୍ଥାଗମପଥପଥିକ ପ୍ରାର୍ଥିତାର୍ଥାମରଦ୍ରୋ ।
ଶକ୍ରପ୍ରତ୍ୟର୍ଥି ପାଥଃ ପତିମଥନମହାମନ୍ଥପୃଥ୍ୱୀଧରାନ୍ତଃ
ସ୍ଥାନଂ ନାଥାମି ତୀର୍ଥାଧିପତଟବଟୟୋଃ ଶ୍ରୀଜଗନ୍ନାଥ ଦୁଃସ୍ଥଃ । ୫୫ ।

ହେ ଶ୍ରୀ ଜଗନ୍ନାଥ ତୁମେ ପାଣ୍ଡବମାନଙ୍କର ଯାବତୀୟ ଅନିଷ୍ଟ ନଷ୍ଟ କରିଦେଇ ଅଶେଷ କୀର୍ତ୍ତି ରଖି ଦେଇଯାଇଛ । ତୁମର କାନ୍ତିକୁ କନ୍ଦର୍ପ ମଧ୍ୟ ପ୍ରାର୍ଥନା କରୁଅଛି । ପ୍ରଭୁ ତୁମେ ଲକ୍ଷ୍ମୀ ଯୁକ୍ତ ହୋଇ ନିତ୍ୟସ୍ଥଳମର୍ତ୍ତ୍ୟ ବୈକୁଣ୍ଠରେ ବିରାଜମାନ କରୁଅଛି । ଧର୍ମ ମାର୍ଗରେ ଥିବା ଲୋକଙ୍କର ଯାଚ୍ଞା ପୂରଣ କରିବା ଦିଗରେ ତୁମେ ଦେବବୃକ୍ଷ ପରି କାର୍ଯ୍ୟ କରିଅଛି । (ଦେବବୃକ୍ଷ-କଳ୍ପବୃକ୍ଷ) ଇନ୍ଦ୍ରଙ୍କର ଶତ୍ରୁ ରୂପକ ସମୁଦ୍ର ମନ୍ଥନ କରିବାରେ ତୁମେ ମହା ମନ୍ଥନଦଣ୍ଡର କାମ କରିଥିଲ । ତୁମେ କୂର୍ମ ରୂପରେ ପୃଥିବୀକୁ ଧାରଣ କରିଥିଲ । ହେ ପ୍ରଭୁ, ମୁଁ ଦୁର୍ଗତ ଓ ଦରିଦ୍ର, ପୁରୀର କଳ୍ପବଟ ଓ ସାଗର ମଧ୍ୟରେ ମୋତେ ସ୍ଥାନ ଦେଇ ରଖ- ଏହା ହିଁ ମୋର ମାଗୁଣି ( ପୁରୁଷୋତ୍ତମ କ୍ଷେତ୍ରର ବଟ ଓ ସାଗର ମଧ୍ୟସ୍ଥ ଭୂମି ହିଁ ମୁଖ୍ୟତଃ ମୁକ୍ତିପ୍ରଦ ବୋଲି ନୀଳାଦ୍ରି ମହୋଦୟରେ ବର୍ଣ୍ଣିତ ଅଛି ଏବଂ ସ୍ୱର୍ଗଦ୍ୱାର ତନ୍ମଧ୍ୟରେ ଅବସ୍ଥିତ । ।୫୫।

| | | | |
|---|---|---|---|
| ନମସ୍ତେ ପ୍ରଭୁ ଜଗନ୍ନାଥ | । | ଚଳାଇ ତୁମ୍ଭେ ପାର୍ଥ ରଥ | ।।୫୫/୧।। |
| ପାଣ୍ଡବମାନଙ୍କ ଅନିଷ୍ଟ | । | ରଖିଲ କୀର୍ତ୍ତି କରି ନଷ୍ଟ | ।।୫୫/୨।। |
| କନ୍ଦର୍ପଜିଣା ତୁମ୍ଭ କାନ୍ତି | । | କନ୍ଦର୍ପ ପ୍ରାର୍ଥନା କରନ୍ତି | ।।୫୫/୩।। |
| ଲକ୍ଷ୍ମୀ ସହ ଯୁକ୍ତ ହୋଇଛ | । | ନିତ୍ୟ ବୈକୁଣ୍ଠେ ବିରାଜୁଛ | ।।୫୫/୪।। |
| ଧରମ ମାର୍ଗୀ ଲୋକ ଯେତେ | । | ଯାଚଞ୍ଚା କରନ୍ତି ସାକ୍ଷାତେ | ।।୫୫/୫।। |
| କରିବା ଦିଗରେ ପୂରଣ | । | ଦେବବୃକ୍ଷ ପ୍ରାୟ ସମାନ | ।।୫୫/୬।। |
| ସମୁଦ୍ର ମନ୍ଥନର କାଳେ | । | କଚ୍ଛପ ରୂପ ଧରି ହେଳେ | ।।୫୫/୭।। |
| ମନ୍ଥନ ଦଣ୍ଡକୁ ଧାରଣ | । | ପିଠିରେ କରିଛ ଆପଣ | ।।୫୫/୮।। |
| ଅଧମେ ପ୍ରଭୁ ଦୟାକର | । | ହେ ପ୍ରଭୁ ନୀଳାଦ୍ରି ଈଶ୍ୱର | ।।୫୫/୯।। |

| | | | |
|---|---|---|---|
| କଳ୍ପବଟରୁ ମହୋଦଧି | । | ମଧ୍ୟେ ଯେ ରହିଛି ଅବଧି | ॥୫୫/୧୦॥ |
| ସେ ସ୍ଥାନ ଅତ୍ୟନ୍ତ ପବିତ୍ର | । | ମୁକ୍ତିପ୍ରଦ ରୂପେ କଥିତ | ॥୫୫/୧୧॥ |
| ଏତିକି ପ୍ରଭୁ ଦୟାକର | । | ପ୍ରାଣପ୍ରିୟ କଳା ଠାକୁର | ॥୫୫/୧୨॥ |
| ପାଦ ତଳେ ମାଗୁଣି ଏତେ | । | ସେସ୍ଥାନ ପ୍ରାପ୍ତ ହେଉ ମୋତେ | ॥୫୫/୧୩॥ |

**ଦାସୀପାଦରଜାଂସି ନିର୍ଜରଶିରୋଧାର୍ଯ୍ୟାଣି ସୂର୍ଯ୍ୟାତ୍ମଜ-**
**ସ଼୍ୁର୍ଜଦ୍ଦୁର୍ଜୟଦୂତଦର୍ପଦମନୀ ଯତ୍ର ସ୍ଥିତିଃ ପାପିନାମ୍ ।**
**ତତ୍ର ସ୍ବାଦସମୋର୍ଦ୍ଧ୍ୱ ବୈଭବବତି କ୍ଷେତ୍ରୋତ୍ତମମେଜାତୁ ମେ**
**ନୈବ ଶ୍ରୀପୁରୁଷୋତ୍ତମେ ଶିବତମେ ସ୍ଥାତୁଂ ବିରାଗୋଦୟଃ । ୫୬ ।**

ଯେଉଁ ଶ୍ରୀକ୍ଷେତ୍ରର ଚାକରାଣୀ ମାନଙ୍କର ପାଦଧୂଳିକୁ ଦେବତାମାନେ ମସ୍ତକରେ ଧାରଣ କରନ୍ତି ଏବଂ ଯେଉଁଠାରେ ରହିବାଦ୍ୱାରା ପାପୀମାନେ ମଧ୍ୟ ଯମଦୂତମାନଙ୍କର ଗର୍ବକୁ ଖର୍ବ କରନ୍ତି ସେହି ମଙ୍ଗଳମୟ ବିଶାଳ- ବିଭବଶାଳୀ କ୍ଷେତ୍ରରାଜପୁରୁଷୋତ୍ତମରେ ବାସ କରିବାରେ ମୋ ମନରେ କେବେହେଲେ ବିରକ୍ତି ନ ଆସୁ । ।୫୬।

| | | | |
|---|---|---|---|
| ନମସ୍ତେ ଶୀକ୍ଷେତ୍ର ଈଶ୍ୱର | । | ପ୍ରାର୍ଥନା ତୁମ୍ଭରି ପୟର | ॥୫୬/୧॥ |
| ନମସ୍ତେ କାଳିଆ ଠାକୁର | । | ଅଧମେ ଏହି କୃପା କର | ॥୫୬/୨॥ |
| ଯେ କ୍ଷେତ୍ର ସେବିକାଗଣର | । | ପଦରେଣୁକୁ ମସ୍ତକର | ॥୫୬/୩॥ |
| ଧାରଣ କରିବା ଇଛନ୍ତି | । | ଦେବେ ସର୍ବଦା ଥାନ୍ତି ଚିନ୍ତି | ॥୫୬/୪॥ |
| ଯେଉଁ ପବିତ୍ର ସ୍ଥଳ ପରେ | । | ନିବାସ କରିବା ଫଳରେ | ॥୫୬/୫॥ |
| ପାପ ଯା କରିଥିଲେ ପାପୀ | । | କ୍ଷେତ୍ର ପ୍ରଭାବେ ହୁଏ ତପୀ | ॥୫୬/୬॥ |
| ସେ କ୍ଷେତ୍ର ପତିଙ୍କ ପ୍ରଭାବେ | । | ଯମଦୂତେ ନ ଡ଼ରେ ଲବେ | ॥୫୬/୭॥ |
| ଗର୍ବ ତାଙ୍କର ଖର୍ବ କରେ | । | କୀରତି ଅରଜେ ସଂସାରେ | ॥୫୬/୮॥ |
| ମଙ୍ଗଳ ମୟ କ୍ଷେତ୍ରରାଜ | । | ଯହିଁ ବିଜୟ ଦେବରାଜ | ॥୫୬/୯॥ |

| | | | |
|---|---|---|---|
| ବିଶାଳ ସେ ବିଭବଶାଳୀ | । | ପୁରୁଷୋତ୍ତମ ବଳେବଳୀ | ॥୫୬/୧୦॥ |
| ପୁଣ୍ୟ ପୁରୁଷୋତ୍ତମ କ୍ଷେତ୍ର | । | ପୃଥୀରେ ପବିତ୍ରୁ ପବିତ୍ର | ॥୫୬/୧୧॥ |
| ସେ କ୍ଷେତ୍ରେ ବାସ କରିବାରେ | । | ଭକତି ଆସୁ ମୋ ମନରେ | ॥୫୬/୧୨॥ |

**ଇତ୍ୟୁତ୍ କଳୋଜ୍ଜଳନୃପାଳକୁଳପ୍ରସୂତ ଶ୍ରୀଚନ୍ଦ୍ର ଶେଖରକୃତୌ ଗଣିତେଽକ୍ଷିସିଦ୍ଧେ । ସିଦ୍ଧାନ୍ତଦର୍ପଣ ଉପାହିତବାଳବୋଧେ କୃଷ୍ଣସ୍ତୁତିସ୍ତ୍ୟଧିକବିଂଶ ଇତଃ ପ୍ରକାଶଃ । ୫୭ ।**

ଇତିଶ୍ରୀଚନ୍ଦ୍ରଶେଖର ସିଂହ କୃତୌ ସିଦ୍ଧାନ୍ତଦର୍ପଣେ କଳାଧିକାରେ ଶ୍ରୀପୁରୁଷୋତ୍ତମ ସ୍ତବ ବର୍ଣ୍ଣନୋ ନାମ ତ୍ରୟୋବିଂଶତିତମଃ ପ୍ରକାଶଃ ।

ବର୍ତ୍ତମାନ ତ୍ରୟୋବିଂଶ ପ୍ରକାଶ ଶେଷହେଲା । ଏଥିରେ କୃଷ୍ଣସ୍ତୁତି (ଜଗନ୍ନାଥଙ୍କର) ହିଁ ରହିଅଛି ଏବଂ ପୁରୁଷୋତ୍ତମର ବର୍ଣ୍ଣନା ମଧ୍ୟ ଅଛି । ।।୫୭।

| | | | |
|---|---|---|---|
| ଏପରି ସିଦ୍ଧାନ୍ତ ଦର୍ପଣେ | । | ବର୍ଣ୍ଣିଲେ ପଣ୍ଡିତେ ଆପଣେ | ॥୫୭/୧॥ |
| ତ୍ରୟୋବିଂଶ ନାମେ ଅଧ୍ୟାୟ | । | ବିଷୟ ଅତି ପୁଣ୍ୟମୟ | ॥୫୭/୨॥ |
| ଶ୍ରୀପୁରୁଷୋତ୍ତମ ସ୍ତବକ | । | ଶ୍ରୀଚନ୍ଦ୍ରଶେଖର କର୍ତ୍ତୃକ | ॥୫୭/୩॥ |
| ପ୍ରଭୁ ମହିଁମା ପ୍ରକାଶଇ | । | ଭକତି ଭାବକୁ ବହଇ | ॥୫୭/୪॥ |
| ପୁରୁଷୋତ୍ତମ କ୍ଷେତ୍ର କଥା | । | ବର୍ଣ୍ଣିତ ଆବଶ୍ୟକ ଯଥା | ॥୫୭/୫॥ |
| ଯେ ପ୍ରଭୁ ମୋ ହୃଦୟେ ବସି | । | କହିଲେ ତାଙ୍କ ଯଶ ରାଶି | ॥୫୭/୬॥ |
| ତାଙ୍କର ଯୁଗଳ ଚରଣେ | । | ମନ ମୋ ରହୁ ଅନୁକ୍ଷଣେ | ॥୫୭/୭॥ |
| ମୋ ପ୍ରଭୁ କାଳିଆ ଠାକୁର | । | ମାନସ ଚକ୍ଷୁରେ ମୋହର | ॥୫୭/୮॥ |
| ସର୍ବଦା ସ୍ଥିରଭାବେ ଥାଉ | । | ମୋର ମନକୁ ମୋହୁ ଥାଉ | ॥୫୭/୯॥ |

